## ଅଭୁଲା ଦିନର କଥା କେଇପଦ :

୧୯୭୦ ମସିହା । ମେଡ଼ିକାଲ କଲେଜର ରଜତ ଜୟନ୍ତୀ । ବିରାଟ ଉତ୍ସବ —ଆଡ଼ମ୍ବରର ସୀମା ନାହିଁ । ଓଡ଼ିଶାର ସର୍ବପୁରାତନ ଏଇ ଚିକିତ୍ସା ମହା-ବିଦ୍ୟାଳୟର ମହାନ୍ ଗୌରବମୟ ପରମ୍ପରା ନେଇ ଅନୁଷ୍ଠିତ ହୁଏ ସପ୍ତାହବ୍ୟାପୀ ନାଟକ ଉତ୍ସବ । ସେହି ଉତ୍ସବ ଉପଲକ୍ଷେ କଲେଜର ବଚ୍ଛା ବଚ୍ଛା ଅଭିନେତା ଅଭିନେତ୍ରୀମାନଙ୍କୁ ନେଇ ରୂପ ଦିଆଗଲା "କାଚଘର" ।

ନାଟକର ମୂଳ କାହାଣୀ ପାଇଁ ଓଡ଼ିଶାର ସୁଖ୍ୟାତ ମାନସିକ ଚିକିତ୍ସକ ଓ ତତ୍କାଳୀନ ମାନସିକ ଚିକିତ୍ସାଳୟର ଅଧ୍ୟକ୍ଷ ଡକ୍ଟର ପାର୍ଥ ସାଓଙ୍କଠାରେ ମୁଁ ଆଜୀବନ ଋଣୀ । ଡକ୍ଟର ସାଓଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ଅତି ଘନିଷ୍ଠ । ଅନେକ ସମୟରେ ଆମେ ମାନସିକ ଚିକିତ୍ସା ବିଜ୍ଞାନ ଓ ରହସ୍ୟମୟ ମାନବଚରିତ୍ର ନେଇ ନିରୋଳାରେ ଆଲୋଚନା କରୁଁ । ଆମ ସହିତ ଯୋଗ ଦିଅନ୍ତି ମାନସିକ ଚିକିତ୍ସାଳୟର ସହକାରୀ ଡକ୍ଟର ପତି, ଡକ୍ଟର ନିବାରଣ ମହାନ୍ତି, ଡକ୍ଟର ଶାନ୍ତି ମହାନ୍ତି, ଶ୍ରୀ ରମେଶ ମଲ୍ଲ ଓ ଶ୍ରୀମତୀ ମେନକା ସାହୁ ।

'କାଚଘର'ର କାହାଣୀ ଜୀବନର ଏକ ରହସ୍ୟପୂର୍ଣ୍ଣ, ଆବେଗମୟ, ସ୍ୱାଭାବିକ ଅସୁସ୍ଥତାକୁ ନେଇ—ଯାହାକୁ ମାନସିକ ଚିକିତ୍ସା ବିଜ୍ଞାନରେ ନାମ ଦିଆ ହୋଇଛି Dizabu phenomenon. ଏହି ଅସୁସ୍ଥତା ମସ୍ତିଷ୍କର କୌଣସି ଆଘାତ, ଯଥା : Trioma due to physical or psychological କିମ୍ବା କୌଣସି ରୋଗଗ୍ରସ୍ତ ଅବସ୍ଥା ଯୋଗୁ ହୋଇଥାଏ ।

ଏହି ଅସୁସ୍ଥତାଜନିତ ଲକ୍ଷଣ ରୋଗୀଠାରେ ପ୍ରକାଶ ପାଏ ଅପରିଚିତ ମଣିଷ ଅଜଣା ପରିବେଶକୁ ଅତି ପରିଚିତ ବୋଲି ସାବ୍ୟସ୍ତ କରିବାରେ । ମାନସିକ ଚିକିତ୍ସା ବିଜ୍ଞାନର ଇତିହାସରେ ଏହି ଧରଣର କେତୋଟି ବାସ୍ତବ କାହାଣୀ ଓ ଡକ୍ଟର ପାର୍ଥସାଓଙ୍କ ଜୀବନର ଏକ ବ୍ୟକ୍ତିଗତ ରୋମାଞ୍ଚକର ଅନୁଭୂତି—ମୋ 'କାଚଘର' ନାଟକର ମୂଳ ଆଧାର ।

ଯେଉଁମାନେ ଏଇ ନାଟକ ଅଭିନୟ କରିବେ ସେଇ ଅନୁଷ୍ଠାନର ଉଦ୍ୟୋକ୍ତା, ନିର୍ଦ୍ଦେଶକ, ଶିଳ୍ପୀ ଓ ମଞ୍ଚକର୍ମୀମାନଙ୍କୁ ମୋର ଅନୁରୋଧ ଯେ ସେମାନେ ନାଟକର ପ୍ରତ୍ୟେକଟି ଚରିତ୍ର ସହିତ ପରିଚିତ ହେବାପାଇଁ ଚେଷ୍ଟାକରିବେ ଏବଂ ନାଟକର ଆବେଗକୁ ଯଥା ଯଥ ଭାବରେ ରୂପ ଦେବେ ।

ମଞ୍ଚ ପରିକଳ୍ପନା ନେଇ ନିର୍ଦ୍ଦେଶକମାନଙ୍କୁ ମୋର ଏକ ବିଶେଷ ଅନୁରୋଧ ରହିଛି । ତାହା ହେଲା, ଏଇ ନାଟକ ପାଇଁ କୌଣସି ନିର୍ଦ୍ଦିଷ୍ଟ ଧରଣର ମଞ୍ଚସଜ୍ଜା ମୁଁ ଚିନ୍ତା କରିନାହିଁ । ନାଟକଟିକୁ ଗୋଟିଏ ସେଟ୍‌ରେ ମଞ୍ଚସ୍ଥ କରିବାର ପରିକଳ୍ପନା କରାଯାଇଅଛି । କିନ୍ତୁ ଉକ୍ତ ସେଟ୍‌ଟିକୁ ପ୍ରତୀକଧର୍ମୀ ( symblic ) ଭାବରେ କିମ୍ବା ପୂର୍ଣ୍ଣାଙ୍ଗ ସେଟ୍ ତିଆରି ମଞ୍ଚସ୍ଥ କରାହୋଇପାରେ । ଗୋଟିଏ ଘରର ବିଭିନ୍ନ ଅଂଶ ଅଭିନୟର ପରିସୀମା ହୋଇଥିବାରୁ ବିଭିନ୍ନ ଧରଣର ମଞ୍ଚ ପରିକଳ୍ପନା ଦ୍ୱାରା କୋଠରିଗୁଡିକ ଦେଖାଇ ଦିଆହୋଇପାରେ ।

ମୁକ୍ତ ରଙ୍ଗମଞ୍ଚରେ କିମ୍ବା ଆବଦ୍ଧ ମଞ୍ଚରେ ଏହି ନାଟକ ପରିବେଷଣ କରାଯାଇପାରେ ।

ମେଡ଼ିକାଲ କଲେଜରେ ଅଭିନୀତ ହେଲାବେଳେ ଏହାର ନିର୍ଦ୍ଦେଶକ ସ୍ୱନାମଧନ୍ୟ ଶ୍ରୀ କୃଷ୍ଣଚନ୍ଦ୍ର ସିଂ ବେଡ୍‌ରୁମ୍, ଡ୍ରଇଂରୁମ୍ ଇତ୍ୟାଦି ବିଭିନ୍ନ କକ୍ଷଗୁଡ଼ିକ ବିଭିନ୍ନ ଉଚ୍ଚତାର ସମତଳ ପ୍ଲାଟ୍‌ଫର୍ମ ସୃଷ୍ଟି କରି ପରିବେଷଣ କରିଥିଲେ ।

ଏଇ ନାଟକର ଆଲୋକ ପରିଚାଳନା କରିଥିଲେ ବିଖ୍ୟାତ ହାସ୍ୟରସିକ ଅଭିନେତା ଶ୍ରୀ ରମେଶ ମଲ୍ଲ । ଆଲୋକ ପରିଚାଳନା ସମ୍ବନ୍ଧୀୟ ବହୁମୂଲ୍ୟ ଉପଦେଶ ପାଇଁ ମୁଁ ଅଭିନେତା ନିର୍ଦ୍ଦେଶକ ଶ୍ରୀ ବ୍ୟୋମକେଶ ତ୍ରିପାଠୀଙ୍କଠାରେ ମଧ୍ୟ ଏକାନ୍ତ ଋଣୀ ।

ନାଟକରେ ସଙ୍ଗୀତର ପ୍ରାଧାନ୍ୟ ନ ଥିଲେ ମଧ୍ୟ ଯନ୍ତ୍ର ସଙ୍ଗୀତର ପ୍ରୟୋଜନ ଅପରିହାର୍ଯ୍ୟ । ହାସ୍ୟରସମୟ ମୁହୂର୍ତ୍ତଗୁଡ଼ିକୁ ବାଦ୍‌ଦେଲେ ବାକିତକ ଅଂଶର ଆବେଗମୟ ମୂର୍ଚ୍ଛନାକୁ ପରିସ୍ଫୁଟ କରିବାରେ ଯନ୍ତ୍ରସଙ୍ଗୀତକୁ ନିର୍ଦ୍ଦେଶକ ଯଥେଷ୍ଟ ପ୍ରାଧାନ୍ୟ ଦେବେ ବୋଲି ମୁଁ ଆଶା କରୁଛି । ବିଶେଷତଃ ଗୋଟିଏ ଦୃଶ୍ୟ ଶେଷ ହୋଇ ଆଉ ଗୋଟିଏ ଦୃଶ୍ୟ ଆରମ୍ଭ ହେଲାବେଳକୁ ମଝିରେ ଯେଉଁ ଅନ୍ଧକାର

ମୂହୂର୍ତ୍ତି ରହିଥାଏ, ସେତେବେଳେ ଯନ୍ତ୍ରସଙ୍ଗୀତର ଝଙ୍କାର ଯେପରି ନୀରବ ହୋଇ ନ ଯାଏ । କାରଣ ଅନ୍ଧକାର ମଧ୍ୟରେ ନାଟକର ରହସ୍ୟଧର୍ମୀ ଓ କରୁଣ ଆବେଗକୁ ବଞ୍ଚାଇରଖିବା ହେଉଛି ଯନ୍ତ୍ରସଙ୍ଗୀତର ନିରବଚ୍ଛିନ୍ନ ଧର୍ମ ।

ଏହି ନାଟକର ପରିବେଷଣରେ ଯିଏ ମୁଖ୍ୟ ଉପଦେଷ୍ଟା ଭାବରେ ଅଂଶ ଗ୍ରହଣ କରିଥିଲେ ସିଏ ହେଉଛନ୍ତି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜର ତତ୍କାଳୀନ ଅଧ୍ୟକ୍ଷ ତଥା ଓଡ଼ିଶାର ବିଖ୍ୟାତ ଶଲ୍ୟ ଚିକିତ୍ସକ ଶ୍ରୀଯୁକ୍ତ ଗିରିଜାଶଙ୍କର ଦାସମହାପାତ୍ର, ଏଫ. ଆର. ସି. ଏସ. । ତାଙ୍କଠାରେ ମୁଁ କେବଳ ଗୁଣିଭାବରେ ନୁହେଁ, ଲେଖକ ଭାବରେ ମଧ୍ୟ କୃତଜ୍ଞ ।

ମଞ୍ଚ ପରିଚାଳନାର ସମଗ୍ର ଦାୟିତ୍ୱ ନେଇଥିଲେ ପ୍ଲାଷ୍ଟିକ୍ ସର୍ଜରୀର ମୁଖ୍ୟ ଅଧ୍ୟାପକ ମୋର ବନ୍ଧୁ ଶ୍ରୀଯୁକ୍ତ ନାରାୟଣ ନନ୍ଦ, ଯାହାଙ୍କର ଅକ୍ଲାନ୍ତ ପରିଶ୍ରମ ନାଟକର ସାର୍ଥକତା ମୂଳରେ ।

ନାଟକର ପ୍ରତ୍ୟେକ ଅଭିନେତା ଅଭିନେତ୍ରୀଙ୍କୁ ବଡ଼ଭାଇର ସ୍ନେହ ଓ ଆଶିଷ ଛଡ଼ା ମୁଁ ଆଉ କଣ ଦେଇପାରିବି ! ଜନତାର କରତାଳି, ଶୁଭେଚ୍ଛା, ଅଭିନନ୍ଦନ, ସବୁକିଛି ତ ସେହିମାନଙ୍କର ପ୍ରାପ୍ୟ । ବିଶେଷତଃ ନାୟିକା କୁମାରୀ ଗୀତା ମହାନ୍ତି, ସବୁଠୁ ବେଶୀ ଜନତାର ଜୟମାଳ୍ୟ ହାସଲ କରିଛନ୍ତି ।

ନାଟ୍ୟ ସଂସଦର ସମ୍ପାଦକ ଡାକ୍ତର ସୌମ୍ୟକାନ୍ତ ଦାସ ଏହି ପରୀକ୍ଷାମୂଳକ ନାଟକଟିକୁ ସାର୍ଥକ ପ୍ରଯୋଜନା କରି ଯେଉଁ ଗୌରବର ଅଧିକାରୀ ହୋଇଛନ୍ତି ତାହା ମେଡ଼ିକାଲ୍ କଲେଜର ନାଟ୍ୟ ଇତିହାସରେ ଦୁର୍ଲଭ ।

ନାଟକର ନିର୍ଦ୍ଦେଶକ ଶ୍ରୀ କୃଷ୍ଣଚନ୍ଦ୍ର ସିଂ ( ସଙ୍ଗୀତ ନାଟକ ଏକାଡେମୀର ସ୍ୱର୍ଣ୍ଣପଦକ ପ୍ରାପ୍ତ ) ମୋର ସାନଭାଇ ହେଲେ ମଧ୍ୟ ତାଙ୍କୁ ମୋର ଗଭୀର ଆନ୍ତରିକ କୃତଜ୍ଞତା ଜଣାଉଛି । ସତ କହିବାକୁ ଗଲେ ନାଟ୍ୟକାର ବାସ୍ତବରେ ନାଟକଟିଏ ଲେଖିଲାବେଳେ ଅଧା ଲେଖିଥାଏ—ବାକି ଅଧକ ଲେଖାହୁଏ ନିର୍ଦ୍ଦେଶକଙ୍କ ହାତରେ । ମୋ ଅଧକ ଲେଖିବାରେ ଯାହାକିଛି ଭୁଲ ତ୍ରୁଟିଥିଲା, ଶ୍ରୀ କୃଷ୍ଣଚନ୍ଦ୍ର ସିଂ ତାକୁ ସଜାଡ଼ିବା ସଙ୍ଗେ ସଙ୍ଗେ ତାଙ୍କର ବାକି ଅଧକ ନିପୁଣ ଭାବରେ ଶେଷ କରିଛନ୍ତି ।

ମୋର ସାନଭାଇ ଶ୍ରୀ ହରପ୍ରସାଦ ପଣ୍ଡ ଏଇ ନାଟକର ପାଣ୍ଡୁଲିପିଟିକୁ ନୂତନ ରୂପରେଖ ଦେଇ ଲେଖିଦେଇଥିବାରୁ ବଡ଼ଭାଇର ସ୍ନେହ ଶିଷ ଦେଇ ମୁଁ ତାଙ୍କର ଉଜ୍ଜ୍ୱଳ ଜୀବନ କାମନା କରୁଛି ।

ନାଟକର ସମାଲୋଚନା କରି ମୋର ଯେଉଁ ସାମ୍ବାଦିକ ବନ୍ଧୁମାନେ ମୋତେ ଉତ୍ସାହିତ କରିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀ ପ୍ରଫୁଲ୍ଲକୁମାର ପଟ୍ଟନାୟକ, ଶ୍ରୀ ଦୁଲାଲ ମିଶ୍ର, ଶ୍ରୀ ଅକବୁର୍ ରହମାନ ଓ ନାଟ୍ୟକାର ଶ୍ରୀ କାର୍ତ୍ତିକ ରଥଙ୍କୁ ବ୍ୟକ୍ତିଗତ ଭାବରେ ମୁଁ ଧନ୍ୟବାଦ ଜଣାଉଛି ।

ଆଜ ନାଟକଟି ଯେତେବେଳେ ଛପା ହେଉଛି ମନେ ପଡ଼ୁଛି ସମସ୍ତ କଥା । ସେମାନେ ସବୁ ଆଜ କଏ କେତେ ଦୂରରେ । ଜୀବନର କର୍ମଜଞ୍ଜାଳ ଓ କର୍ତ୍ତବ୍ୟ ତୋଡ଼ି ଆମ ସମସ୍ତଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରିଛି । କିନ୍ତୁ ମନରେ ସମସ୍ତେ ସମସ୍ତଙ୍କଠାରେ ସ୍ନେହର ଡୋରରେ ବନ୍ଧା ।

ମେଡ଼ିକାଲ କଲେଜ ରଜତ ଜୟନ୍ତୀ ରଜନୀର ସେଇ ଅଭୁଲା ସ୍ମୃତି ଆମ ସମସ୍ତଙ୍କ ମନରେ ଚିର ଉଜ୍ଜ୍ୱଳ, ଚିର ସମୁଜ୍ଜ୍ୱଳ !!!

ଜୟ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜ
ଜୟ ମେଡ଼ିକାଲ୍ କଲେଜ ନାଟ୍ୟ ସଂସଦ

—ଲେଖକ

## ଉତ୍ସର୍ଗ

ମୋର ଏଇ

'କାଚଘର'କୁ

ଯିଏ ନିଜ ହାତରେ

ନିହାଣ ମୁଗୁର ଦେଇ

ସାର୍ଥକ କରି

ଗଢ଼ି ତୋଳିଲା

ସେଇ ସୁନାମଧନ୍ୟ

ସଙ୍ଗୀତ ନାଟକ ଏକାଡେମୀର

ସ୍ୱର୍ଣ୍ଣପଦକପ୍ରାପ୍ତ ନିର୍ଦ୍ଦେଶକ

ଶ୍ରୀ କୃଷ୍ଣଚନ୍ଦ୍ର ସିଂହଙ୍କ

ହାତରେ

ଲେଖକ—

# କାଚଘର

ପ୍ରଥମ ଅଭିନୟ ରଜନୀ : ୧୯୭୦, ଏପ୍ରିଲ ୮, ୯, ୧୦ ତାରିଖ

ମୁଖ୍ୟ ଅତିଥି : ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମୁରାରୀ ମିଶ୍ର

ମୁଖ୍ୟ ଉପଦେଷ୍ଟା : ଡାକ୍ତର ଗିରିଜାଶଙ୍କର ଦାସମହାପାତ୍ର

ପ୍ରଯୋଜନା : ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟର ନାଟ୍ୟସଂସଦ

ନାଟ୍ୟ ସମ୍ପାଦକ : ଡାକ୍ତର ସୌମ୍ୟକାନ୍ତ ଦାସ

ମଞ୍ଚ ପରିଚାଳନା : ଡାକ୍ତର ନାରାୟଣ ନନ୍ଦ

ବିଦ୍ୟୁତ୍ ସଞ୍ଚାଳକ : ବିଦ୍ୟୁତ୍ ବିଭାଗ, ଓଡ଼ିଶା ସରକାର ( G. E. D. )

ଆଲୋକ ସମ୍ପାତ : ଶ୍ରୀ ବ୍ୟୋମକେଶ ତ୍ରିପାଠୀ (ନିର୍ଦ୍ଦେଶକ ଅଭିନେତା)
ଶ୍ରୀ ରମେଶ ଚନ୍ଦ୍ର ମଲ୍ଲ

ମଞ୍ଚସଜ୍ଜା : ଡାକ୍ତର ସୁବାସ ସାହୁ, ଡାକ୍ତର ସରୋଜ ମହାନ୍ତି,
ଡାକ୍ତର ଚଣ୍ଡି ପଣ୍ଡା, ଡାକ୍ତର ପ୍ରଦୀପ ଭୂୟାଁ

ରଙ୍ଗ ତୁଳୀ : ଶ୍ରୀ ଚିତ୍ରାଳୟ, କଟକ

ସଙ୍ଗୀତ ପରିଚାଳନା : ଡାକ୍ତର ବସନ୍ତ କୁମାର ମହାପାତ୍ର

ଯନ୍ତ୍ର ସଙ୍ଗୀତ : ବନମାଳୀ, ନବୀନ, ପ୍ରଧାନ

ନାରୀ ଚରିତ୍ରର ଅଙ୍ଗସଜ୍ଜା : ଡାକ୍ତର କୁମାରୀ କଳ୍ପନା ମିଶ୍ର

## ଯେଉଁମାନେ ରୂପ ଦେଲେ :

ତନ୍ମୟ— ଡା : ପ୍ରମୋଦ ମହାନ୍ତି
ଗୁମାସ୍ତା—ଡା : ବିଚିତ୍ରା ନନ୍ଦ ବେହେରା
ଅଶୋକ—ଡା : ମହମ୍ମଦ ଆବାସ
ପାଇକରାୟ—ଡା : ଅଶ୍ୱିନୀ କୁମାର ଦ୍ୱିବେଦୀ
ଅବନୀ— ଡା : ଅନଙ୍ଗମୋହନ ଦ୍ୱିବେଦୀ
ସାଧୁଆ—ଡା : ରାଧାଗୋବିନ୍ଦ ନନ୍ଦ
ପ୍ରଶାନ୍ତ— ଡା : ପବିତ୍ରାନନ୍ଦ ଅଧିକାରୀ
ନମାଇଁ—ଡା : ପ୍ରମୋଦ କୁମାର ମଲ୍ଲିକ
ମୁକ୍ତମଲ—ଡା : ସନ୍ତୋଷ ପାଣିଗ୍ରାହୀ
ଚଟିନୀ—ଡା : ଗୀତା ମହାନ୍ତି
ଡାକ୍ତର— ଡା : ସୁରେଶ ଚନ୍ଦ୍ର ମହାନ୍ତି
ନୀହାରିକା—ଡା : ବନଶ୍ରୀ ମଜୁମଦାର
ପୋଲିସ—ଡା : ଦେବପ୍ରସାଦ ରଥ
ନିର୍ଦ୍ଦେଶନା—ଶ୍ରୀ କୃଷ୍ଣଚନ୍ଦ୍ର ସିଂହ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଶୋଇବାଘର ଖଟ ଉପରେ ଶୋଇଥିଲେ ତନ୍ମୟ । ସକାଳ ୬ଟା । ଦୂରରୁ ଶୁଭୁଥିଲା ବୈଷ୍ଣବଧର୍ମୀ ଜମାର୍ଦ୍ଧଚରଣଙ୍କର କୀର୍ତ୍ତନର ସୁଲଳିତ ଛନ୍ଦ । ଗୀତ ଗାଇ ଗାଇ ସେ ଦ୍ୱାର ଦ୍ୱାର ଭିକ ମାଗି ବୁଲୁଥିଲେ । ତାଙ୍କର କଣ୍ଠସ୍ୱର କ୍ରମେ ନିକଟତର ହେଉଥାଏ । ତନ୍ମୟର ମୁଣ୍ଡ ପାଖରେ ଥିବା ଟୁଲ୍ ଉପରେ ଛୋଟ ଘଣ୍ଟାଟାର ଆଲାର୍ମ ବାଜିଉଠିଲା । ତନ୍ମୟର ନିଦରେ ବ୍ୟାଘାତ ଆସିଲା । ବିରକ୍ତିରେ ହାତ ବଢ଼ାଇ ସେ ଆଲାର୍ମ ଘଣ୍ଟାଟାକୁ ଚପି ବନ୍ଦ କରିଦେଲା । ଏହି ସମୟରେ ଘରର ସାଧୁଚରଣ ଆସି ଦେଖିଲା, ସାନବାବୁ ଘଣ୍ଟାଟିକୁ ଚପି ବନ୍ଦ କରୁଛନ୍ତି—]

ସାଧୁଚରଣ—ସେଇଟାକୁ ବନ୍ଦ କରୁଚ କାହିଁକି ? ତାକୁ ନେଇ ରେଜେଇ ଭିତରେ ଶୋଇପକାଅ । ( ସାନବାବୁଙ୍କ ହାତ ସହିତ ଘଣ୍ଟାଟା ଧରେଇ ରେଜେଇ ଭିତରେ ପୂରେଇଦେଲା ) ତମେ ଶୁଅ—ସିଏ ବି ଶୋଉ ।

[ ଜମାଦିଙ୍କର ଗୀତ ଶୁଣି ସାଧୁଆ ଶୋଇବାଘରୁ ବୈଠକଖାନାକୁ ଉଠିଛି । ଏହାକବେଳେ ବୈଠକଖାନା ଭିତରକୁ ପ୍ରବେଶ କଲେ ଜମାଦି । ହାତରେ ଖଞ୍ଜଣି । ପୂର୍ବରୁ ଗାଉଥିବା ଗୀତ ବନ୍ଦ କରି...... ]

ଜମାଦି—କ'ଣ ସାଧୁଆ, କଳାକାହ୍ନୁର ଜଦ କ'ଣ ଏ ଯାଏ ଭାଙ୍ଗି ନାହିଁ ?

ସାଧୁଆ—ଜଦ କ'ଣ ଏବେ ଭାଙ୍ଗନ୍ତା ! ନଇତ ଗଡରେ...

ଜମାଦି—ନଇତ ଗଡରେ..... ? ? ?

ସାଧୁଆ—ସେକେନ୍ ସୋ !

ଜମାଦି—ସିନେମା ?

ସାଧୁଆ—ହଁ, ସିନମା !

ଜମାଦି—ହଉ, ଶୁଅନ୍ତୁ.. ଶୁଅନ୍ତୁ ।

ସାଧୁଆ—( ବିକୃତ ସ୍ୱରରେ ) ହଁ, ଶୁଅନ୍ତୁ...ଶୁଅନ୍ତୁ—

ଜମାଦି—ଆଜି ରଇବାର ।

ସାଧୁଆ—ହଁ, ରଇବାର, ଆଖଡ଼ା ।

ଜମାଦି—ଆଖଡ଼ା ? ?

ସାଧୁଆ—ହଁ, ଫି ରଇବାର ଏଠି ଆଖଡ଼ା ।

ଜମାଦି—ଫି ରଇବାର ?

ସାଧୁଆ—କଡ଼ା ତାଗିଦ ।

ଜମାଦି—ତାଗିଦ...

ସାଧୁଆ—ସକାଳୁ ଉଠେଇ ଦଦାଙ୍କୁ !

ଜମାଦି—( ହସିଲେ )

ସାଧୁଆ—ହିଁଛ ମଣିଚ ? ଗଲା ଥଇଟା ରଇବାରରେ କାନମୋଡ଼ା ଖାଇଚ ।

[ ସାଧୁଆ ଦ' ହାତରେ କାନ ମୋଡ଼ି ମୁହଁକୁ ବିକୃତ କରିବାର ଅଭିନୟ କଲା ]

ଜମାଦି—କିଏ, ସାନବାବୁ ?

ସାଧୁଆ—ନା, ତାଙ୍କର ସାଙ୍ଗମାନେ ।

ଜମାଇଁ—ହଉ । ସାଙ୍ଗମାନେ ତ ଆସିନାହାନ୍ତି...

ସାଧୁଆ—ଅଜ୍ଞା ଏଇନାନେ ଆସିଯିବେ ।

[ ତରତର ହୋଇ ଶୋଇବା ଘରକୁ ଯାଇ ଘଣ୍ଟାଟା ରେଜେଇ ତଳୁ କାଢ଼ି ଆଣିଛି ସାଧୁଆ । ଟେକି ଧରିଛି ଜମାଇଁଙ୍କ ଆଗରେ ]

ହେଇଟି, ସାତଟା ହେଲଣି ।

ଜମାଇଁ—ଏ'ଟା କଣ ? ( ଘଣ୍ଟାକୁ ଇଙ୍ଗିତ କରି )

ସାଧୁଆ—ଏଇଟା ବି ରେଜେଇ ତଳେ ଶୋଇଥିଲା ।

ଜମାଇଁ - ସାନବାବୁଙ୍କ ସାଙ୍ଗରେ ?

ସାଧୁଆ—ହଁ ।

ଜମାଇଁ—ବାଃ ..ବେଶ୍ ..ବେଶ୍...( ଜମାଇଁ ହସିଲେ )

ସାଧୁଆ—ରାତିରେ ଏଇଟାକୁ ଚାବି ନ ମୋଡ଼ିଲେ ସାନବାବୁଙ୍କୁ ନିଦ ହୁଉନାହିଁ ।

ଜମାଇଁ—ସକାଳେ ଏଇଟା ବାଜିଲେ ନିଦ ଭାଙ୍ଗି ଯାଉଛି...

[ ତନ୍ମୟ ଉଠିପଡ଼ିଛି । ରେଜେଇ ଫୋପାଡ଼ି ଦେଇ ଖଟ ଉପରେ ବସି ପାଟି କରୁଛି ]

ତନ୍ମୟ—( ଉଚ୍ଚସ୍ୱରରେ ) ସାଧୁଆ...ସାଧୁଆ... !

ସାଧୁଆ—ଅଜ୍ଞା !

( ତନ୍ମୟ ଶୋଇବାଘରୁ ବୈଠକଖାନାକୁ ଅସିଯାଇଛି )

ତନ୍ମୟ—କହିଥିଲି ନା ସାତଟାରେ ଡାକିଦବୁ !

ସାଧୁଆ—( ଗୋସଇଁଙ୍କୁ ଚାହିଁ ) ଗୋସେଇଁ, ଦେଖୁଛନ୍ତି ?

ତନ୍ମୟ—ଆରେ, ଜମାଇଁ ନନା ! ( ନମସ୍କାର କରିବା ଭଙ୍ଗୀରେ )

ଜମାଇଁ—( ହାତ ଉପରକୁ ଟେକି ଆଶୀର୍ବାଦ ଦବା ଭଙ୍ଗୀରେ ) ଠାକୁରେ ଭଲରେ ରଖନ୍ତୁ, ବାପା !

ତନ୍ମୟ—( ରାଗିଉଠି ) ଦେଖୁଛନ୍ତି ନନା ! ସକାଳୁ ଡାକିଦେବାକୁ କହିଥିଲି... ଘଣ୍ଟାଟା କୁଆଡ଼େ ଗଲା ? ( ସାଧୁଆ ଘଣ୍ଟାକୁ ହାତରେ ଧରି ବୁଲୁଥାଏ )

ତନ୍ମୟ—କିରେ, ଘଣ୍ଟାକୁ ଇମିତି ହାତରେ ଧରୁ...

ସାଧୁଆ—ନ ଧରିଲେ ସିଏ ଆଗକୁ ଚାଲିଯିବ ଯେ !

ଚନ୍ଦ୍ରସ୍ବ—ଆଗକୁ ଗ୍ଭଲିଯିବ ?

ସାଧୁଆ—(ଘଣ୍ଟାକୁ କୋବଲେଇ) ହୁଁ, ସାରୁଟାବେଳେ ସ ନ ?ାକୁ ଉଠିବା କଥା ଯିଏ ନ ଉଠିଲଯାଏ ସାରୁଟା ଡେଇଁ ଘାଉଥିବ । .ଘଣ୍ଟାକୁ ଗ୍ଭହିଁ) ଆରେ··· କଣ ମାନୁନାହିଁ, ସାତ ଡେଇଁ ଛଅଟା ଘର ଆଗେଇଗଲଣି !

ଚନ୍ଦ୍ରସ୍ବ—ଆଲର୍ମ ଦିଆହୋଇଥିବ···

ଜମାଇଁ—ତେର ଆଗରୁ ବାଜଯାଇଚ, ସାନବାବୁ !

ଚନ୍ଦ୍ରସ୍ବ—ଏଁ ? ବାଜଯାଇଚ !

ସାଧୁଆ—( ଛଗ୍ଭଲେଇ ) ଆଜ୍ଞା ! ( ସେଇପରି ଘଣ୍ଟାକୁ ଧରି ବୁଲୁଥାଏ )

ଜମାଇଁ—ସାଙ୍ଗମାନେ ତ ଆସିନାହାନ୍ତି···

ଚନ୍ଦ୍ରସ୍ବ—ଏଇନା ଆସି ପହଞ୍ଚିଯିବେ । ( ସ ଧୁଆ ପ୍ରତି ) ତୁ ସେଭିଙ୍ଗ୍ ସେଟ୍ଟା ନେଇଆସିଲୁ, ମୁଁ ମୁହଁ ଧୋଇ ଆସୁଚ । ( ଭିତରକୁ ଗଲା )

[ ସାଧୁଆ ଘଣ୍ଟାଟାକୁ ହାତରେ ଧରି ଏପାଖ ସେପାଖ ବୁଲୁଛି । ଏହି ସମୟରେ ଜମାଇଁ ସୁଲଳିତ କଣ୍ଠରେ ଗାଇଚାଲନ୍ତି ଶ୍ରୀକୃଷ୍ଣଙ୍କର ପହୁଡ ଭାଙ୍ଗିବାର ଗୀତ ପଦୁଟିଏ । କିଛିକ୍ଷଣ ପରେ ଚନ୍ଦ୍ରସ୍ବ ପ୍ରବେଶ କରିଛି । ଟାୱେଲରେ ମୁହଁ ପୋଛୁଚ ]

ଚନ୍ଦ୍ରସ୍ବ—କରେ, ସେଭିଙ୍ଗ ସେଟ୍ ଆଣିଲୁନ !

ସାଧୁଆ—( ଚମକିପଡ଼ି ଘଣ୍ଟାଟାକୁ ଥୋଇଦେଇ ) ଆଜ୍ଞା, ଯାଉଚ ।

ଜମାଇଁ—କଣ ନନ୍ଦଗୋପାଳ ? ଖୁବ୍ ଆଖଡ଼ା ଜମୁଚ, ଶୁଣିଲି ।

ଚନ୍ଦ୍ରସ୍ବ—ହଁ, ଗୋସେଇଁ, ଏଇ ରବିବାର ସକାଳୁ···

ଜମାଇଁ—ହଁ, ଭଲ ।

ଚନ୍ଦ୍ରସ୍ବ—ଆଖଡ଼ା···ଭଲ···?

ଜମାଇଁ—କଥାରେ ଅଛି, 'ବାପା ଚଢ଼ୁଥିଲେ ଘୋଡ଼ା···ପୁଅ ବି···'

ଚନ୍ଦ୍ରସ୍ବ—ଥୋଡ଼ା ଥୋଡ଼ା । ତା ମାନେ, ବାପା ବି ଇମିତି···?

ଜମାଇଁ—ହଁ, ଇମିତି ନାଚ, ଗୀତ, ଗପ, ତାମସା···

ଚନ୍ଦ୍ରସ୍ବ—କ'ଣ କହୁଚ, ନନା ?

ଜମାଇଁ—ହଁ, ଏଇ ଘରେ ।

ତନ୍ମୟ—ଏଇ ଘରେ ?

ଜମାଇଁ—ହଁ, ଗୀତ, ନାଚ, ତାମସା…ମୁଁ ବି ନାଚଛ, ଗୀତ ଗାଇଛ ।

ତନ୍ମୟ—ତାଙ୍କ ସାଥିରେ ?

ଜମାଇଁ—ହଁ…ସେ ଯୋଉ ଗୀତ…ଆହା…ହା…

[ ଗୀତ ପଦଏ ଗାଇଉଠିଲେ । ଘର ଭିତରେ ଦାଢ଼ି କାଟିବାର ସମସ୍ତ ଉପକରଣ ନେଇ ସାଧୁଆର ପ୍ରବେଶ ]

ସାଧୁଆ—ହଁ,ନାଟଅଖଡ଼ା ତ କରୁଚ, ଏଥର ଜମାଇଁ ଗୋସାଇଁଙ୍କ'ଠୁଁ ଗୀତ ଶିଖ ।

ତନ୍ମୟ—( ଆଖି ଦେଖାଇ ) ଚୁପ୍ !

ସାଧୁଆ—( ପାଟିରେ ହାତ ଦେଇ ) ଚୁପ୍ ।

ତନ୍ମୟ—ଜାଣିଚ ? ବାପା ବି ଡ୍ରାମା କରୁଥିଲେ…

ସାଧୁଆ—( ପାଟିରେ ହାତ ଦେଇ ) ଚୁପ୍ ।

ତନ୍ମୟ—ଯାଉଚୁ ନା ଏଠୁ ! ( ସାଧୁଆ ଭିତରକୁ ଚାଲିଯାଇଛ )

( ଗାଲରେ ସାବୁନ ମାରୁମାରୁ ଜମାଇଁଙ୍କ ଗୀତ ଶୁଣି ମୁଗ୍ଧ କଣ୍ଠରେ ତନ୍ମୟ ) ବଢ଼ିଆ ଗୀତ, ନନା ! Three cheers…

ଜମାଇଁ—ତମେ ସବୁ ସିନମା ଯୁଗର ନୋକ, କ'ଣ ଭଲ ନାଗିବ ?

ତନ୍ମୟ—ଶୁଣିବାକୁ ତ ଭଲ ଲାଗୁଛ ।

ଜମାଇଁ—ଭଲ ନାଗୁଛ ?

ତନ୍ମୟ—ତମେ ଆମ ଡ୍ରାମାରେ ଗାଇବ ?

ଜମାଇଁ—ମତେ ପୁଣି ନେଇ ଯନ୍ତ୍ରରେ…ନାଇଁ, ସାନବାବୁ !

ତନ୍ମୟ—କାଇଁକି ହବନି ?

ଜମାଇଁ—ମୋ ଦେଇ ହବନି; ମୁଁ ଯାଉଛ । ( ଚାଲିଗଲେ )

ତନ୍ମୟ—(ଖୁବ୍ ଜୋରରେ ହସିଉଠି) ଗୋସେଇଁ, ଗୋସେଇଁ, ଶୁଣ ! ଆରେ ସାଧୁଆ, ଗୋସେଇଁଙ୍କି କ'ଣ ଦେଲୁନି ? ହେଇଟି, ସିଏ ଚାଲିଗଲେ ।

( ସାଧୁଆ ବୈଠକ ଖାନାରେ ପ୍ରବେଶ କରୁଛି )

ସାଧୁଆ—ସିଏ କ'ଣ ଏ ଘରକୁ ନବାକୁ ଆସନ୍ତି ?

ଚନ୍ଦ୍ରସ୍ତୁ—ଆଉ କାହିଁକ ?

ସାଧୁଆ—ତୁମକୁ ଦେଖିବାକୁ ।

ଚନ୍ଦ୍ରସ୍ତୁ—ସବୁଦିନେ ?

ସାଧୁଆ—ହଁ, କଇଛ...

ଚନ୍ଦ୍ରସ୍ତୁ—ସତେ ?

ସାଧୁଆ—ତମେ ତ ଶୋଇଥାଅ, ଜାଣିବ କୋଉଠୁ ?

ଚନ୍ଦ୍ରସ୍ତୁ—ଅଉ ତୁ ତାଙ୍କୁ କଇଛ ଇମିତ ଖାଲି ହାତରେ ବିଦା କରିଦଉ ?

[ ବାଡ଼ିଦୁଆରେ ଗହଡ଼ ଡାକ ଶୁଣି ସାଧୁଆ ଭିତରକୁ ଗ୍ୱଲିଯାଇଛି । ଚନ୍ଦ୍ରସ୍ତୁ ଅଧା ସେଭିଙ୍ଗ୍ ହୋଇଛି, ପ୍ରବେଶ କରିଛି ଚଟିମା, ଝଡ଼ ଭଳି ]

ଚଟିମା—ଅଜ ଦିନଟା ବାଡ଼ି ନ କାଟିଥିଲେ ହୋଇ ନ ଥାନ୍ତା ? ସତେ ଯେମିତ କେହି ଚାହିଁ ନ ଥାନ୍ତେ ! ଛି...ଛି...ଛି, ମୁଁ ଆଗରୁ ଏତେକରି ଚିଠି ଲେଖିଲି...ତୁମେ ଟିକଏ ଷ୍ଟେସନ ଯାଇଥିଲେ ହୋଇ ନ ଥା'ନ୍ତା ?

ଚନ୍ଦ୍ରସ୍ତୁ—ଚିଠି ! ଷ୍ଟେସନ...( ବିସ୍ମୟରେ ଆବାକାବା ହୋଇ ଠିଆ ହୋଇପଡ଼ିଲେ )

ଚଟିମା—ଆଜ ଯଦି ଗୁଡ଼ାଏ ଲଗେଜ ଥ ନ୍ତା । ଆଜକା'ଲି କୁଲିମାନଙ୍କର ଯୋଉ ଜୁଲୁମ...

ଚନ୍ଦ୍ରସ୍ତୁ—ମୁଁ ତ କାହାରି ଚିଠି ପାଇନ !

ଚଟିମା—ଆଉ । ଯେତେ ସବୁ ବ୍ଳଫ...ଚିଠିଟା ତମେ ପାଇଥିବ ଯେ, ପଢ଼ିବାକୁ ତୁମର ବେଳ ନ ଥିବ । ତୁମକୁ ମୁଁ ଜାଣିନି ? ସେଭିଙ୍ଗଟା ସେତକ ଥାଉ, ପଇସା ଦିଅ—ମୁଁ ରିକ୍ସାବାଲାକୁ ବିଦାକରେଁ । (ରିକ୍ସାବାଲାର ପ୍ରବେଶ)

ଚଟିମା—( ରିକ୍ସାବାଲା ପ୍ରତି ) କେତେ ଦବୁ ?

ରିକ୍ସାବାଲା—( ତେଲଗୁ ଭାଷାରେ ଗରଗର ହେବା )

ଚଟିମା—କୁଲିମାନଙ୍କ ପାଟିତୁଣ୍ଡ ଶୁଣି ଶୁଣି ମୋ ମୁଣ୍ଡ ଗରମ । ତୁ ଆଉ ପାଟି କରନା ।

ରିକ୍ସାବାଲା ( ଅବୋଧ୍ୟ ତେଲୁଗୁରେ କଣ କହିଲା )

ଛଟିମା —ବରକ୍ତରେ ବର୍ଷିପଡ଼ିଲା । ( ଚନ୍ଦ୍ରସ୍ୱ ପ୍ରତି ) ତମେ ଠିଆ ହେଉଚ କଣ ମ ? ତାଙ୍କୁ ବଦାକର ।

ଚନ୍ଦ୍ରସ୍ୱ—( ଛଟିମା ପ୍ରତି ) ଯାଉଚ ।

( ଶକ୍ ସ୍ୱାବାଲ ପ୍ରତି ) ଅବେ, ଭିତରକୁ କ'ଣ ପଶି ଆସନବେ ? ବାହାରକୁ ଗ୍ଲୁଲ୍ । ହେଉଚି, ପଇସା ନେ—ଯା ବାହାରକୁ !

[ ଶକ୍ ସ୍ୱାବାଲ ଅବୋଧ ତେଲୁଗୁ ଭାଷାରେ ଗାଳି ଗାଇ ହୋଇ ବାହାରକୁ ଗଲା ]

ଛଟିମା—ଇସ୍ ଏ ସବୁ କ'ଣ ହେଉଚ ! ଏଠି ମଣିଷ ରହୁଥିଲା, ନା ଭୂତ ରହୁଥିଲା ?

ଚନ୍ଦ୍ରସ୍ୱ—ମଣିଷ ! ! !

ଛଟିମା—ଏ ସବୁ କ'ଣ ହେଉଚ ? ( ବଡ଼ିଆ ଜାଗାକୁ ଦେଖାଇ ) ଖଣ୍ଡିଆ ସିଗାରେଟ୍ ଛୁଣ୍ଡା କାଗଜ, ଧୂଳି ରଚରଚ…ଛି…ଛି…ଛି, ଖାଲି ଡାଡ଼ିଟାକୁ ଝକ୍‌ଝକ କରି କଟା ହୁଉଥାଉ । ( ଚନ୍ଦ୍ରସ୍ୱ ହାତରୁ ସେଭିଙ୍ଗ୍ ସେଟ୍ ଫୋପାଡ଼ି ଦେଇଚ)

ଚନ୍ଦ୍ରସ୍ୱ—ଆପଣ ଏସବୁ କଅଣ କରୁଚନ୍ତି ?

ଛଟିମା—( ବ୍ୟଙ୍ଗୋକ୍ତି କରି ) ଅପଣ ? କ'ଣ ହେଲା ? ଛୋଉ ଡ୍ରାମା ଡାଇଲଗ୍ ମନେ ପଡ଼ୁଗଲା କ ?

ଚନ୍ଦ୍ରସ୍ୱ—ଡ୍ରାମା !

ଛଟିମା—ଯିମିତି ଢଙ୍ଗରେ କଥାବାର୍ତ୍ତା କରୁଚ ନା…

ଚନ୍ଦ୍ରସ୍ୱ—କଣ ଗାଁରୁ ଆସିଲେ ? ( ଇତସ୍ତତଃ ହୋଇ ) ମାନେ, ବାପାଙ୍କ ଚିଠି ନେଇ…

ଛଟିମା—ମତେ ଡାକପିଅନ କଣ ପାଇଲ ?

ଚନ୍ଦ୍ରସ୍ୱ—ନା, ମୁଁ କହୁଥିଲି କଣ କ, କୁଆଡ଼େ ଆସିଥିଲେ ?

ଚନ୍ଦ୍ରସ୍ୱ—ତମକୁ ଜବତ କରିବାକୁ । ( କହୁଦେଇ ଘର ଭିତରକୁ ପଶିଯାଉଥିଲା )

ଚନ୍ଦ୍ରସ୍ୱ —( ବଢ଼ଳ ହୋଇ ) ସାଧୁଆ…!

ସାଧୁଆ—( ଭିତରୁ ଆଇ ) ଅଜ୍ଞା, ଦୁଧଟା ଆଉଟିଦେଇ ଯାଉଚ…

ଛଟିମା—ଓ, ଯୁ। ଭିତରେ ଗୋଟେ ଗୁଜର ରହୁଲଣି ! ଦେଖେଁ, ଦେଖେଁ ତା, ମୁହଁଟା ଟିକେ ।

ଚନ୍ଦ୍ରସ୍ମ—ଟିକେ ଶୁଣନ୍ତୁ

ଛଟିମା—ଫେର ଶୁଣନ୍ତୁ···

ଚନ୍ଦ୍ରସ୍ମ—ନା, ନା, ଶୁଣ !

ଛଟିମା—ଆଗେ ରଫେସ୍ତ୍ ହୋଇଯାଏଁ ; ତା'ପରେ ଯାହା କହୁବ, ଶୁଣିବ ।

ଚନ୍ଦ୍ରସ୍ମ—ରଫ୍ରେସ୍ତ୍ ?

ଛଟିମା—ବାଥ୍‌ରୁମ୍‌ରେ ପାଣି ଅଛି ତ ?

ଚନ୍ଦ୍ରସ୍ମ—(ଖୁବ୍ ବ୍ୟତିବ୍ୟସ୍ତ ହୋଇ) ଆପଣ···ନା ଜୀ, ତମେ ଭୁଲ କରୁଛନ୍ତି···

ଛଟିମା—ଭୁଲ ?

ଚନ୍ଦ୍ରସ୍ମ—ବୋଧହୁଏ ଭୁଲରେ···

ଛଟିମା—ଭୁଲରେ ? ମାନେ ?

ଚନ୍ଦ୍ରସ୍ମ—ଭୁଲ ଠିକଣାରେ···

ଛଟିମା—ଭୁଲ ଠିକଣାରେ ?

ଚନ୍ଦ୍ରସ୍ମ—ଭୁଲ ଠିକଣାରେ ପହଞ୍ଚିଯାଇଛନ୍ତି ।

ଛଟିମା—ଭୁଲ ଠିକଣାରେ ନୁହେଁ, କହୁପାର, ଭୁଲ ମଣିଷ ପାଖରେ ।

( ହସି ହସି ଭିତରକୁ ପଶିଯାଇଛି )

ଚନ୍ଦ୍ରସ୍ମ—( ଅସହାୟ ଭାବରେ ବ୍ୟସ୍ତ ହୋଇ ) ସାଧୁଆ···ସାଧୁଆ ! କରେ, ଡାକଲେ ବ ଜବାବ ମିଳୁନ !

[ ଛଟିମା ସାଧୁଆର କାନ ଧରି ଭିତରୁ ନେଇ-ଆସିଛି । ସାଧୁଆ ପାଟିରୁ ଗୁଡ଼ାଏ ଦୁଧ ଓ ଦୁଧସର ଖସିପଡ଼ୁଛି । ସାଧୁଆ ବିକଳ ଭାବରେ ରହୁଯାଇଛି ]

ଛଟିମା—ଜବାବ ଦବ୍ କେମିତି ? ପାଟିରେ ତ ପାଟିଏ ଦୁଧସର ପୁରେଇଛି···

ସାଧୁଆ—( ବିକଳ ହୋଇ ଗିଳି ପକାଇ ପକାଇ ) ନାଇଁ ଆଜ୍ଞା, ଜାଲ୍‌କାର ବାସି କ୍ଷୀରଗୁଡ଼ାକ ରହୁ ଯାଇଥିଲା ଯେ···

ଚଟିଣୀ—ଚୁପ୍‌କର ! ବାସି କ୍ଷୀର ! ମୁଁ ନିଜେ ଦେଖିଚି, ସଜ ଦୁଧ ଉପରୁ ସରତକ ଆଣି ପାଟିରେ ପକେଇଦେଲୁ ! କହୁଚୁ, କ'ଣ ନା, ବାସି କ୍ଷୀର ! ସତ କଥାଟା ମାନିବୁ ନା ନାହିଁ ? ( ସାଧୁଆର କାନଟାକୁ ମୋଡ଼ିଲା )

ସାଧୁଆ– ( ବିକଳ ହୋଇ ) କହୁଚି…କହୁଚି…କହୁଚି । ହୁଁ…ହୁଁ, ସଜ କ୍ଷୀର ।

( ଚଟିଣୀ ସାଧୁଆର କାନ ଛାଡ଼ିଦେଲା )

ଚଟିଣୀ—( ଚନ୍ଦ୍ରମୁଖ ପ୍ରତି ) ଶୁଣିଲ ଏଇଟାକୁ ରଖିବାକୁ ତମକୁ କିଏ କହୁଥିଲା ?

ସାଧୁଆ—ମୋର ଦୋଷ ହୋଇଚି, ଆଜ୍ଞା ! ( ଚନ୍ଦ୍ରମୁଖର ଗୋଡ଼ତଳେ ପଡ଼ିଗଲା )

ଚଟିଣୀ—ଗୋଡ଼ତଳେ ପଡ଼ିବା ଦରକାର ନାହିଁ, ବାହାର ଏ ଘରୁ ।

ସାଧୁଆ– ଅଉଦିନେ ଏମିତି ଦୁଅଖିଆ ବୁଦ୍ଧି କରିବିନି, ଅଜ୍ଞା ! ଏଇଥରକ ମୋତେ ମାଫ୍ କରନ୍ତୁ ।

ଚଟିଣୀ—କିଛି ଶୁଣିବିନି । ବାହାର ଏ ଘରୁ । ମୁଁ ନ ଥିବାରୁ ଉନାକେତେ ଖୁବ୍ ମାଛପିଟି ଖାଇଲୁ । ସେ ଏକା ଥିଲେ ଯେ ଧମକାଉଥିଲୁ । ମୋ ପାଖରେ ସେ ସବୁ ପଟିବନି । ବିନା ଚାକରରେ ମୁଁ ବେଶ୍ ଚଳିପାରିବି । ମତେ ସବୁ କାମ ଆସେ । ଯା, ବାହାର ଏଠୁ, ବାହାର ।

( ସାଧୁଆ ଆସି ବିକଳରେ ଚନ୍ଦ୍ରମୁଖର ଗୋଡ଼ ଧରିଲା )

ସାଧୁଆ—ବାବୁ ! ଏଇଥରକ ମୋତେ…

ଚନ୍ଦ୍ରମୁଖ—ହଉ, ହଉ, ତୁ ଭିତରକୁ ଯା ।

ଚଟିଣୀ—କ'ଣ ହେଲା ? 'ଭିତରକୁ ଯା' ! ତାକୁ ଏଇଠୁ ବିଦାକର । ତମକୁ ଆଉ ଲୋକ ମିଳୁ ନ ଥିଲା ? ଏଇ ପେଟବିକଳିଆ ଟାଉକାଟାକୁ ଆଣି ରଖିଥିଲ ! ମୁଁ ନ ଥିଲାବେଳେ ତୁମକୁ ଚାକର ରଖିବାକୁ କହୁଥିଲା କିଏ ? ଗୋଟେ ମଣିଷ, କ'ଣ ହୋଟେଲରୁ ଖାଇପାରୁ ନ ଥିଲ ?

ସାଧୁଆ—( ଚନ୍ଦ୍ରମୁଖ ପ୍ରତି ସହାନୁଭୂତି ଦେଖାଇ ) ଆଜ୍ଞା ! ହୋଟେଲରୁ ? ନାହିଁ, ନାହିଁ, ନାହିଁ ହୋଟେଲରୁ ଖାଇଲେ ତାଙ୍କ ପେଟ ଖରାପ ହୋଇଯିବ ।

ଚଟିଣୀ—ଚୁପ୍ କର ! ସେକଥା କହିବାକୁ ତୁ କିଏ ? ଯା, ବାହାର ଏଠୁ ।

ସାଧୁଆ—ଆଜ୍ଞା, ମରିଯିବି । ( ଚଟିଣୀ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲା )

ଚଟିମା—( ଗମ୍ଭୀର ସ୍ୱରରେ ) ହୁଁ, ଯିବୁ କମିତ ? ଦୁଧସର ପାଟିରେ ଲାଗିଚ । ଏଠିକା ମଜା ଆଉ କୋଉଠି ମିଳିବ ? ହେଲେ ମୁଁ ଅଇଲିଣି । ଆଉ ଇମିତ ଟାଉକାପଣ ଚଳିବନି ।

ସାଧୁଆ—( ଉଠିପଡ଼ି ହନୁମାନ ଭଳିଆ ହାତ ଯୋଡ଼ି ବସିଗଲା )
ନାଇଁ ଅଜ୍ଞା, ଆଉ କେବେ···

ଚଟିମା—ସେଥିପାଇଁ କହୁଚି ?

ସାଧୁଆ—ଅଜ୍ଞା, ସଉଦାପତ୍ର ତ କିଛୁ ନାଇଁ ।

ଚଟିମା—ରହିବ କୋଉଠୁ ? ତୁ ତ ସବୁଥରେ ହାତ ବୁଲେଇବୁ···କେଶୀ ଢାମ୍ ଦେଇ କମ୍ ଓଜନର ପରିବା ଘରକୁ କିଣାହୋଇ ଆସୁଥିବ···ସେଥିରୁ ଅଧେ ବାରପଟେ ବଜାରକୁ ଚାଲିଯାଉଥିବ ! ଯାହା ତ କରିଛୁ, କରିଛୁ । ଏଣିକି ସେ ସବୁ ବୁଦ୍ଧି ଛାଡ଼ । ଆ, ଚିଠା ଲେଖିଦଉଚି । ଯାହା ଲେଖୁଚି, ତୁ ଠିକ୍ ଦର କଷି ହିସାବ ଲେଖି ଆଣିବୁ ।

[ ଚଟିମା ଆଗେ ଆଗେ ଓ ସାଧୁଆ ପଛେ ପଛେ ଘର ଭିତରକୁ ପଶିଗଲେ । ଶୋଇବାଘରେ ଚଟିମା ସାଧୁଆକୁ କହୁଥିବାର ଦେଖାଗଲା ]

ଚଟିମା—ଦେଖ୍, ପରିବା ବସି କି ପୋକା ଅଣିବୁନି । ଓଜନ ଠିକ୍ ଦେଖି ଆଣିବୁ ।

ସାଧୁଆ—ଅଜ୍ଞା !

ଚଟିମା—ମାଛ ଦେଖିକରି ଅଣିବୁ । ଗାଲ୍ ଟେକି ଲାଲ୍ ଅଛି କି ନାଇଁ ଦେଖି ଆଣିବୁ । ପଚା ହୋଇଥିଲେ ତୋ'ର ମୁଣ୍ଡକୁ ଫୋପାଡ଼ିବି, ଆଉ ତୋ'ର ଦରମାରୁ କାଟିବି ।

ସାଧୁଆ—( ଚିଠା ନେଇ ବାହାରକୁ ଯାଉଥିଲା )

ଚଟିମା—ଦେଖ୍, ଶୀଘ୍ର ଆସିବୁ । ସିଆଡ଼େ ଆଉ କାହା ସାଙ୍ଗରେ ଗପ ଯୋଡ଼ିଦେବୁ ନାଇଁ ।

ସାଧୁଆ ଆଜ୍ଞା ! (ଚାଲିଗଲା)

[ ଚଟିମା ପ୍ରବେଶ କରିଛି ବୈଠକଖାନାରେ ]

ତଟିନୀ—( ତନ୍ମୟକୁ ଚାହିଁ ) କଣ, ଦାଢ଼ି କଟାଟା ସେଠିକରେ ରହିଗଲା ? କାଟ୍‌ କାଟୁନୁ । ନ ହେଲେ ଦିଅ, ମୁଁ କାଟିଦଉଚି ।

ତନ୍ମୟ—ନା, ମୁଁ କାଟୁଣି ।

ତଟିନୀ—ଝୁଲର ଗଳା ବଜାରକୁ । ତମର ଦାଢ଼ି କଟା ସରିବନି । ମୁଁ ଏଇନେ ଘୋଷେଇ ଘରେ ମରିବ । ଭିତରକୁ ଚାଲିଯାଇଛି, ହାଲୁଆ ହେଇ ଆସିଲ ଯେ…ଟିକେ ରେଷ୍ଟ ନେଇଆ'ନ୍ତୁ…କାମ, କାମ, କାମ !

[ ରିହର୍ସାଲ କରିବାପାଇଁ script ଓ ଅସ୍ତ୍ରଶସ୍ତ୍ର ଧରି ଶିଶିର, ପ୍ରଶାନ୍ତ, ଅବନୀ ପ୍ରବେଶ କରିଛନ୍ତି । ତନ୍ମୟକୁ କାବାହୋଇ ବସିଥିବାର ଦେଖି ସମସ୍ତେ ଏକାସାଙ୍ଗରେ ଚତ୍କାର କରିଛନ୍ତି—Cheers —Three Cheers— ]

ଶିଶିର—ଯାହାହେଉ, ଆଜି ସାଧୁଆ ଡାକରେ ନଦ ଖାଙ୍ଗିଚି ।

ପ୍ରଶାନ୍ତ ନଦଟା ଲାଗିଲେ କ'ଣ ହେବ ?

ଅବନୀ ଦାଢ଼ିକଟା ସରିନି ।

ଶିଶିର—କରେ ! କଣ ହେଇଚି ?

ପ୍ରଶାନ୍ତ—ଅଧା କାଟି ବସିଚୁ ?

ଅବନୀ—ବ୍ଲେଡ଼୍‌ରେ ଧାର ନ ଥିବ ।

ଶିଶିର—ପୁରୁଣା ବ୍ଲେଡ଼୍ ।

ପ୍ରଶାନ୍ତ—( ସହାନୁଭୂତିରେ ଚୁ…ଚୁ…କରି ) ଧାର ନାହିଁ ?

ଅବନୀ—( ଚୁରିଅ'ଡ଼କୁ ଚାହିଁ ) ଆଉ କ'ଣ କରୁ ନାହିଁ ?

ଶିଶିର—( ହାତରେ ଧରିଥିବା ଖଣ୍ଡାଟାକୁ ବଢ଼ାଇଦେଇ ) ନିଅ, ଧର ଅସ୍ତ୍ର, କାଟ ଦାଢ଼ି ( ନାଟକୀୟ ଭଙ୍ଗୀରେ ) ।

ପ୍ରଶାନ୍ତ—ଖବରଦାର ! ସ୍ୱେ ହତ୍ୟା ହେଇଯିବ ।

ଅବନୀ—( ନାଟକୀୟ ଭଙ୍ଗୀରେ ) ସ୍ୱେ ହତ୍ୟା ! ! ! ଅସମ୍ଭବ ।

ଶିଶିର—ନିଆଁରେ ପୋଡ଼ିବ ନାହିଁ ।

ପ୍ରଶାନ୍ତ—ପାଣିରେ ବୁଡ଼ିବ ନାହିଁ ।

ଅବନୀ—ଫାଇଟିଙ୍ଗ୍‌ରେ ହାରିବ ନାହିଁ…ହିନ୍ଦୀ ପିକ୍‌ଚର ଦେଖନ୍ତୁ ।

ଶିଶିର—ସେ ଅମର ।

ପ୍ରଶାନ୍ତ—ସେ ମୃତ୍ୟୁଞ୍ଜୟ ।

ଅବନୀ—ସେ ସତ୍ୟ-ଶିବ-ସୁନ୍ଦର ।

ଶିଶିର—ଆବେ ଚିନ୍ମୟ, ବସିଚ୍ କ'ଣ ?

ପ୍ରଶାନ୍ତ—ଡାଢ଼ି ଟା କାଟିପକା ।

ଅବନୀ—ସ୍ପେଶେଲ୍ ଆସିଥିବ ।

ଚିନ୍ମୟ—( ବିରକ୍ତ ହୋଇ ) ଧେତ୍ ।

ଶିଶିର—Don't take it joke.

ପ୍ରଶାନ୍ତ—ଓଲ୍ ରଜ ହୋଇଛୁ ?

ଅବନୀ—କଲ୍ଲୁ ଫୋଟେ ସଣ୍ଢି ।

ଶିଶିର—ତୁ 'ଅର୍ଜ୍ଜୁନ' ହେଲେ ସେ 'ଚିତ୍ରାଙ୍ଗଦା' କରିବ ।

ଚିନ୍ମୟ—'ଓଲ୍' ?

ପ୍ରଶାନ୍ତ—'ଧୀରଜ'ର ଭଉଣୀ ।

ଚିନ୍ମୟ—ଏଠିକି ଆସିବ ?

ଅବନୀ—ହଁ, ଆଜି ।

ଚିନ୍ମୟ—ହେଇ ପାରିବନି ।

ଶିଶିର—ପାର୍ଟ ମୁଖସ୍ଥ କରିନୁ ତ ?

ପ୍ରଶାନ୍ତ—ମୁଁ ପ୍ରମ୍ପଟିଙ୍ଗ୍ କରିବି ।

ଅବନୀ—ତୁ ରେଡ଼ି ହେଇଯା ।

ଶିଶିର—ରିହର୍ସାଲ୍ ଦେ ।

ଚିନ୍ମୟ—ଏଠି ଯୋଉ ରିହର୍ସାଲ୍ ଆରମ୍ଭ ହେଇଛି···

ପ୍ରଶାନ୍ତ—ରିହର୍ସାଲ୍ ! !

ଚିନ୍ମୟ—ହଁ, ରିହର୍ସାଲ୍···ଡ୍ରାମା ।

ଅବନୀ—କ'ଣ କହୁଚୁ ?

ଚିନ୍ମୟ—ସ୍ପେଶେଲ୍ ଆସିଯାଇଛି ।

ଶିଶିର—ଆସିଯାଇଛି ?

ଚିନ୍ମୟ—ଖାଲି ଆସିଯାଇନି, ଅସି ମୋ ଉପରେ ସ୍ୱାଢ଼ମତ ଚଢ଼ାଉ କରିଯାଇଛି ।

ପ୍ରଶାନ୍ତ—( ଅନ୍ୟ ଦୁଇଜଣଙ୍କୁ ) ଆବେ, ତମେ ଦୁଇଟା ଆଉ କାହାକୁ···

ଅବନୀ—ଆଉ କାହାକୁ, ମାନେ ? ସମସ୍ତିଙ୍କି···

ପ୍ରଶାନ୍ତ—ସମସ୍ତିଙ୍କି ? ?

ଶିଶିର—କଲେଜରେ ଏମିତ କୋଉ ଝିଅ ନାହିଁ ଯାହାକୁ ଭଲ୍‌ଏଷ୍ଟ କରି ନ ହେଇଚ ।

ପ୍ରଶାନ୍ତ—ଦୁ'ଟା ବୋଲ୍ଡ 'ଗେଲ୍'—'ଚନ୍ଦ୍ରାଙ୍ଗଦା' ଆଉ 'ରେଖା' ।

ଅବନୀ—ହଁ, ସେଇ ଦୁ'ଟା ଗେଲ୍ ପାଇଁ କମ୍ ଲୋକଙ୍କୁ ଆପ୍ରୋଚ୍ କରିହେଇଚ !

ପ୍ରଶାନ୍ତ—ଉଦ୍ଦେଶ୍ୟ ମନ୍ଦ । ସ୍ୱାଟ୍‌ଗଇନ ଖୋଜିବା ବାହାନାରେ···

ଶିଶିର—ଜାଣିଚୁ ତ ସ୍ୱଇ ଏଇଟା ଗୋଟାଏ ନ୍ୟୁସନ୍ସ ।

ଚନ୍ଦ୍ରସ୍ୱ—ତମେମାନେ ନ୍ୟୁସନ୍ସ କରୁଥାଅ । ଏଠି ମୋ ଉପରେ ଜୁଲୁମ୍ ।

ଅବନୀ—ଆମକୁ କ'ଣ ସିଆଡ଼େ କମ୍ ଜୁଲୁମ୍ ସହିବାକୁ ପଡ଼ୁଚ !

ଶିଶିର—Ladies hostel gateରେ ଘଣ୍ଟା ଘଣ୍ଟା···

ଚନ୍ଦ୍ରସ୍ୱ—ତମକୁ ବେଳ ଅଛୁ, ତମେ ସମୟ ନଷ୍ଟ କର । ହେଲେ ସେମାନଙ୍କୁ ଏଠିକି ପଠେଇ ମୋ ଭବିଷ୍ୟତ ନଷ୍ଟ କର ନାହିଁ ।

ପ୍ରଶାନ୍ତ—ତୋ ଭବିଷ୍ୟତ ନଷ୍ଟ ହେବ ? Impossible.

ଶିଶିର—କିଏ ଆସିଥିଲା ? ଛନ୍ଦା ?

ଅବନୀ—ଧେତ୍, ସେଇଟା କୋଉଠୁ ସାହସ କରିବ ମ ! 'ମାନସୀ' ହେଇଥିବ ।

ପ୍ରଶାନ୍ତ—ଆବେ ଯା ! Forwardnessରେ ସମସ୍ତିଙ୍କି କାନ କାଟିଦେବ 'ଜବତା' । ସେଇ ଆସିଥିବ ।

ଶିଶିର—No, Impossible. ମୁଁ କହୁଚ, ଛନ୍ଦା ।

ପ୍ରଶାନ୍ତ—ମୁଁ କହୁଚ ଜବତା ଛଡ଼ା ଆଉ କେହି ହେଇପାରେନା ।

ଅବନୀ—ମୁଁ କହୁଚ, ମାନସୀ ।

[ ଜଣେ ଖଣ୍ଡା, ଜଣେ ଗଦା ଓ ଜଣେ ଧନୁଶର ନେଇ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଗଲେ ]

ଚନ୍ଦ୍ରସ୍ୱ—ବାଃ, ବେଶ୍···ବେଶ୍···( ଜୋରରେ ଚତ୍କାର କରିଛୁ ) ଏସବୁ କ'ଣ ହଉଚ, ଅବନୀ ! ଶିଶିର ! ପ୍ରଶାନ୍ତ !

ପ୍ରଶାନ୍ତ—ଶିଶିର ! ତୁ ସୀମା ଟପିଯାଉଚୁ ।

ଶିଶିର—ତୁ କୋଉ ସୀମା ଭିତରେ ଅଛୁ ଯେ !

ଅବନୀ—ତମେ ତ'ଟାଯାକ ନିଜ contorl ବାହାରେ···

ତନ୍ମୟ—(ଦୁଇ କାନରେ ହାତ ଦେଇ) ଇସ୍ ! ଚିତ୍କାର କରନାହିଁ ।

ଅବନୀ—Stop !

ପ୍ରଶାନ୍ତ—ଖାଲି stop ନୁହେଁ—Hands up !

[ ସମସ୍ତେ Hands up କଲେ ନିଜନିଜର ଅସ୍ତ୍ର ଧରି ]

ତନ୍ମୟ—ତମେମାନେ ଏଠି ଯୁଦ୍ଧ କରିବ, ନା ସେ ଝିଅଟାର ଖବର ଟିକେ ବୁଝିବ ?

ଶିଶିର—ଅଲବତ୍, ତୋ ଉପରେ ଯିଏ ଜୁଲୁମ କରିଛି···

ଅବନୀ—ତାକୁ ହତ୍ୟା କରାଯିବ । ( ନିଜ ଅସ୍ତ୍ର ଦେଖାଇ )

ପ୍ରଶାନ୍ତ—ହଁ, Murder.

ଶିଶିର—କାହିଁ ? ସେ କୋଉଠି ?

ତନ୍ମୟ—ଭିତରେ ।

ସମସ୍ତେ—ଭିତରେ ! ଚାଲିଲୁ ଦେଖିବା ।

ତନ୍ମୟ—ନା, ସିଏ ତମେ ଆଣିଚ, ତମେ ସମ୍ଭାଳ । ( ବାହାରକୁ ଚାଲିଗଲା )

[ ଏକା ସାଙ୍ଗରେ ସମସ୍ତେ ନିଜ ନିଜର ଅସ୍ତ୍ର ଧରି ଘର ଭିତରକୁ ମାଡ଼ିଗଲେ ]

ତଟିନୀ—( ଘର ଭିତରୁ ) କରେ ସାଧୁଆ ! ସେ ଘରେ କ'ଣ ପାଟି କରୁଚୁ ? କରେ, ତୋ ପାଇଁ କଣ ମାର୍କେଟ ଦୂରକୁ ଘୁଞ୍ଚିଯାଇଥିଲା, ନା କଣ ? ଆଣିଲୁ, କଣ ଆଣିଚୁ ଦେଖେଁ ।

[ କହୁ ବୈଠକଖାନାକୁ ଆସିଛି । ଏମାନଙ୍କୁ ସମସ୍ତଙ୍କୁ ଦେଖି ମୁଣ୍ଡ ଉପରେ ଓଢ଼ଣା ଟାଣିଦେଇ ]

I am sorry, ମୁଁ ଭାବିଲି, ସାଧୁଆ ବଜାରରୁ ଫେରି ଆସିଚି । ଆରେ, ଛିଡ଼ାହେଲେ କାହିଁକି ? ବସନ୍ତୁ ଆପଣମାନେ ।

[ ଶିଶିର, ପ୍ରଶାନ୍ତ ଓ ଅବନୀ ତଟିନୀକୁ ଦେଖି ଅବାକ୍ ହୋଇଯାଇଛନ୍ତି । ତାଙ୍କ ହାତରୁ ଖଣ୍ଡା, ଗଦା ଇତ୍ୟାଦି ଖସିପଡ଼ିଛି । ତଟିନୀ ଖୁବ୍ ଜୋରରେ ହସିବାକୁ ଆରମ୍ଭ କରିଛି ]

ତଟିନୀ—ଆରେ, କ'ଣ ଏମିତି ତାବା ହୋଇଗଲେ ଯେ ? ମତେ ଟିକେ ଚଣ୍ଡା ଦିଅନ୍ତୁ, ମୁଁ ହମନ୍ତଙ୍କ ନାତି ଜଣେ ।

ଶିଶିର—ଆଗେ ଆପଣ କଏ କୁହନ୍ତୁ ।

ତଟିନୀ—ମୋ ପରିଚୟ ? ମୁଁ ତଟିନୀ । ଆରେ, ଅପଣମାନଙ୍କ ପରିଚୟଟା ଦିଅନ୍ତୁ । ମୋ କଥାର ଜବାବ୍ ଦିଅନ୍ତୁ । ଦେଖୁଛି,ଆପଣମାନଙ୍କ ମୁଣ୍ଡରେ କିଛିନାହିଁ ।

ସମସ୍ତେ—( ହଠାତ୍ ଚମକିପଡ଼ି ) କଣ ? ମୁଣ୍ଡରେ କିଛି ନାହିଁ ?

ପ୍ରଶାନ୍ତ—ଆଉ ଆପଣଙ୍କ ମୁଣ୍ଡରେ ?

ତଟିନୀ - ମୋ ମୁଣ୍ଡରେ ଓଢ଼ଣା ଅଛି—ସିନ୍ଦୂର ଅଛି । କ'ଣ ତେବେ ବି···!

[ ସମସ୍ତେ ତଟିନୀର କଥା ଶୁଣି ନିଜକୁ ଅପରାଧୀ ମନେକରିବା ପରି ତଳକୁ ମୁଣ୍ଡ ପୋତିଲେ ]

ତଟିନୀ – ନା, ନା, feel କରିବାର କିଛି ନାହିଁ । ମନେହେଉଛି, ଆପଣମାନଙ୍କ ଭିତରୁ ଭାବାର ହାତଗଣ୍ଠି ପଡ଼ିନାହିଁ ।

[ ସମସ୍ତେ ଫେରିଯାଉଥିଲେ ।]

ତଟିନୀ—ରୁହନ୍ତୁ, ଗୁଲିଯାଉଛନ୍ତି କୁଆଡ଼େ ? ପ୍ରଥମ ଦେଖାରେ ଆପଣମାନଙ୍କୁ ଗୁ କପେ କପେ ନ ଖୋଇ ମୁଁ ଛାଡ଼ୁନାହିଁ । ନ ହେଲେ ଆପଣମାନଙ୍କଠୁଁ ସ୍ୱଜନ ଡାକ ଶୁଣିବି କିମିତି ?

ପ୍ରଶାନ୍ତ—ତା ମାନେ,

ଚିନ୍ମୟ—ତା'ହେଲେ···

ଶିଶିର—ଇତିମଧ୍ୟରେ···

ଅବନୀ—ହେଇଯାଇଛି···

ପ୍ରଶାନ୍ତ—ଯଥା ରାବଣସ୍ୟ ମନ୍ଦୋଦରୀ

ଶିଶିର—ଯଥା ନଳସ୍ୟ ଦମୟନ୍ତୀ

ଅବନୀ—ଯଥା ରାମସ୍ୟ ସୀତା ।

ପ୍ରଶାନ୍ତ—ଦେଖିଲୁ ଶିଶିର, ତନ୍ମୟଟା କେଡ଼େ ଚାଲୁ !

ଶିଶିର—Acting···Acting···Hero !

ଅବନୀ—ଆମକୁ ଧୋକା ଦେଇଦେଲା !

ତଟିନୀ—ଆପଣମାନେ ଚାହିଁଲେ ତାଙ୍କୁ ଧୋକା ଦେଇପାରିବେ ।

ପ୍ରଶାନ୍ତ—Yes, revenge.

ତଟିନୀ—Revenge ନେବାକୁ ପ୍ରସ୍ତୁତ ?

ସମସ୍ତେ—( ଏକାସ୍ୱରରେ ) ପ୍ରସ୍ତୁତ ।

ତଟିନୀ—ଆସନ୍ତୁ, ମୁଁ ଆପଣମାନଙ୍କୁ ସାହାଯ୍ୟ କରିବି ।

ସମସ୍ତେ—( ଜୋରରେ ) Three cheers ଭାଉଜ,
three cheers ଭାଉଜ !

ଶିଶିର—Plan ଟା କ'ଣ ଆଗେ କୁହନ୍ତୁ ତ !

ତଟିନୀ—କାମ ।

ସମସ୍ତେ—କାମ ?

ତଟିନୀ—ହଁ, ହଁ, କାମ—ଘରକାମ । ଆପଣ ଧରନ୍ତୁ ଏଇ ଝାଡୁଟା । (ବାଉଁଶ ବେଣ୍ଟ ଲାଗିଥିବା ଲମ୍ବ ଝାଡୁଟା ଧରେଇ ଦେଇ ଘର ଛାତକୁ ଦେଖାଇ ) ଦେଖୁଛନ୍ତି, କେତେ ଅଳିଆ···ବୁଢ଼ିଆଣୀ ବସା···କାମରେ ଲାଗିଯାନ୍ତୁ । ( ଆଉ ଜଣଙ୍କୁ ଏକ ହେମଦସ୍ତା ଦେଇ ) କାମରେ ଲାଗିଯାନ୍ତୁ । ( ଆଉ ଜଣଙ୍କ ହାତରେ ଖଣ୍ଡେ ଝାଡ଼ଣ ଦେଇ ) ଆପଣଙ୍କ କାମ ଛାତ ଉପରେ ନୁହେଁ, ତଳେ । ( କହି ତଳେ ଧୂଳିମଳି ହୋଇ ଅସଂଯତ ଭାବରେ ପଡ଼ିଥିବା furniture ଗୁଡ଼ାକ ଦେଖାଇଦେଲା )

ସମସ୍ତେ—କିନ୍ତୁ ଏସବୁ କ'ଣ ?

ତଟିନୀ—Tit for tat. ପ୍ରତିଶୋଧ । ମୁଁ ଯାଉଛି, ଆପଣମାନଙ୍କ ପାଇଁ ଚାହା ତିଆରି କରିବି । Condition ରହିଲା, ସମସ୍ତେ ଚୁପ୍ । ତାଙ୍କ ସାଙ୍ଗରେ କେହି···(ପାଟିରେ ହାତଦେଇ ଚୁପ୍ ରହିବାର ଅଭିନୟ କଲା )

ସମସ୍ତେ—( ଏକ ସାଙ୍ଗରେ ) ଚୁପ୍, ତନ୍ମୟ ସାଙ୍ଗରେ no talk.

ଶିଶିର—ହେଲେ ଗୁରୁଜୀ, ଏ ସବୁ କ'ଣ ଆମକୁ ଆସିବ ?

ତଟିନୀ—ଆଗରୁ training ନେଉଥାନ୍ତୁ; ନ ହେଲେ ମୋ ସାନ ଝିଅ'ମାନଙ୍କ ପାଖରୁ ଗାଳି ଶୁଣିବାକୁ ପଡ଼ିବ । ( ତଟିନୀ ଭିତରକୁ ଚାଲିଯାଇଛି )

ସୁମନ୍ତ—Let us start—One···Two···Three.

[ ତନ୍ମୟ ଘର ଭିତରକୁ ପଶିଆସିବା ପୂର୍ବରୁ ]

ତନ୍ମୟ—( ବାହାରୁ ) କ'ଣ, କିଛି କରିଦେଲ ? All clear ? କିରେ, କ'ଣ ସବୁ ପାଟିତୁଣ୍ଡ ଶୁଭୁନି ! ( କବୁ ଜବୁ ଭିତରକୁ ପଶି ଆସି ଏମାନଙ୍କୁ ତାଙ୍କରି ବ୍ୟସ୍ତ ଥିବାର ଦେଖି ବିବ୍ରତ ହୋଇ ) ଆରେ ! ଏ ସବୁ କଣ ଚାଲିଛି ?

ପ୍ରଶାନ୍ତ—ନାମ ।

ଅବନୀ—ଘରନାମ ।

ଶିଶିର—ସାନ ଝିଅ'ମାନଙ୍କଠାରୁ ଗାଳି ଖାଇବାକୁ ପଡ଼ିବନି ।

ପ୍ରଶାନ୍ତ—Training···Training···ଅର୍ଥାତ୍ ତାଲିମ୍···

ତନ୍ମୟ—ଆଚ୍ଛା ! ଏହାଥିରେ କେ ଉନ୍ନକଣଯାକ ମେଣ୍ଟ ?

ସୁମନ୍ତ—ହଁ, ମେଣ୍ଟ ।

ତନ୍ମୟ—ତମ ଖଣ୍ଡା, ବର୍ଚ୍ଛା, ଗଦା ସବୁ ଗଲ କୁଆଡ଼େ ?

ଶିଶିର—ନା, ଏଥର ଯୁଦ୍ଧ ନୁହେଁ, ସନ୍ଧି ।

ପ୍ରଶାନ୍ତ—ଅହିଂସା ପରମ ଧର୍ମ ।

ଅବନୀ—ବୁଦ୍ଧଂ ଶରଣଂ ଗଚ୍ଛାମି ।

ତନ୍ମୟ—ଏର ଡାଇଟର କନ୍ଦୁଥିଲ, ବଦା ନଲବ !

ଅବନୀ—ବଦା ଜରୁରୁ ନେଇ; ତାଙ୍କ ଗୋଡ଼ଧୂଳି ନେବୁ ।

ତନ୍ମୟ—ଗୋଡ଼ଧୂଳି ?

ପ୍ରଶାନ୍ତ—ହଁ, ଖଣ୍ଡନ···।

ତନ୍ମୟ—ହୁଁ, କ'ଣ ସବୁ କହୁଚ ?

ଅବନୀ
ଶିଶିର } Acting, Acting ··

ପ୍ରଶାନ୍ତ—Hero, Hero···

ତନ୍ମୟ—ତମେମାନେ ଏଇଥିପାଇଁ ଏଠିକି ଆସିଥିଲ ?

ସମସ୍ତେ—ଆସିଥିଲୁ ଯେ···ହେଲେ ଫଳ ଶୁଣ ସମସ୍ତେ ମେଣ୍ଢା ବନିଯାଇଛ ।

ତନ୍ମୟ—( ରାଗିଯାଇ ) ହଁ ଆମେମାନେ ସବୁ ସତରେ ମେଣ୍ଢା ।

ସମସ୍ତେ—( ହସି ହସି ) ହଁ ଆପଣମାନେ ସବୁ ସତରେ ମେଣ୍ଢା ।

[ ତଟିନୀ ଚୁଡ଼ା ଟ୍ରେରେ ଚୁରକୁଟ୍ ଚୁଡ଼ା ଧରି ବସିଛି ]

ତଟିନୀ—ମେଣ୍ଢାଛେଳି ଏଠି ତ କେହି ନାହାନ୍ତି !

ତନ୍ମୟ—ମୁଁ ତ ଜାନ୍ୱାରଙ୍କ କଥା କହୁନ ।

ତଟିନୀ—ହଉ, ଭଲ କଥା ।

[ ଚାହିଁଦେଇ ସମସ୍ତଙ୍କୁ ଚୁଡ଼ା ବଢ଼ାଇଦେଲା । ସମସ୍ତେ ଚୁଡ଼ା ଖାଇବା ଆରମ୍ଭ କଲେ । ତଟିନୀ ତା' ନିଜ ଚୁଡ଼ା ପ୍ଲେଟ୍ଟା ହାତରେ ଧରି ତନ୍ମୟକୁ ଚାହିଁ କହିଲା ]

ଇସ୍, ମୁଁ ତ ତମ ପାଇଁ ଚୁଡ଼ା କରିନେଇ ! ଆଚ୍ଛା, ଏଇଟା ଅଧା ଅଧା ବାଣ୍ଟି ନେବା—ଫିଫ୍ଟି, ଫିଫ୍ଟି ।

ତନ୍ମୟ—ନା, ମୋର ଦରକାର ନାହିଁ ମୁଁ ଯାଇ ହୋଟେଲରେ ଖାଇ ଆସିବି ।

ତଟିନୀ—ହୋଟେଲ କୁ ? ଚମତ୍କାର ! ମତେ ବି ଭଲ ଲାଗେ । ଚାଲ ନା, ମୁଁ ବି ଯାଇ ଖାଇଆସିବି ।

ତନ୍ମୟ—ତମେ ମୋ ସାଙ୍ଗରେ ହୋଟେଲକୁ ଯିବ ?

ତଟିନୀ—ଯିବି ।

ତନ୍ମୟ—ଆଶ୍ଚର୍ଯ୍ୟ !

ତଟିନୀ—ଆଶ୍ଚର୍ଯ୍ୟ ହେବାର ତ କିଛି ନାହିଁ !

ତନ୍ମୟ—କିଛି ନାହିଁ ?

ତଟିନୀ—ହଁ, ମୋ ମତରେ ଏ ଦେଶରେ ପ୍ରତ୍ୟେକ ସ୍ୱାମୀ ସ୍ତ୍ରୀ breakfast, lunch, dinner ସବୁ ହୋଟେଲରେ ଖାଇବା ଆରମ୍ଭ କଲେ ଦେଶ ଆଗେଇଛି ବୋଲି ଜଣାପଡ଼ିବ । ଚାଲ ଯିବା ।

ତନ୍ମୟ—ତମେ ମୋ ସାଙ୍ଗରେ···?

ତଟିନୀ—କାହିଁକି ? କ'ଣ ଲାଜ ମାଡ଼ୁଛି ?

ତନ୍ମୟ—ବେଶ୍ ଚାଲ; କିନ୍ତୁ ହୋଷ୍ଟେଲକୁ ନୁହେଁ, ଥାନାକୁ ।

ତଟିନୀ—ଥାନାକୁ ?

ତନ୍ମୟ—ହଁ ବାଧ୍ୟ ହୋଇ ଯିବାକୁ ପଡ଼ିବ ।

ତଟିନୀ——ତମେ ଯଦି ଯାଉଛ, ବାଧ୍ୟ ହେଇ ମତେ ବି ଯିବାକୁ ପଡ଼ିବ ।

ତନ୍ମୟ—ଥାଉ ଥାଉ, ଯିବା ଦରକାର ନାହିଁ । ତମେ ଏଇଠି ଥାଅ; ମୁଁ ଯାଇଁ
ଥାନାରେ ଖବର ଦେଇ ଆସୁଛି । ( ତନ୍ମୟ ଘରରେ ବାହାରକୁ ଚାଲିଗଲା)

ଅବନୀ—ସୁନ୍ଦର ! ବ୍ୟାପାରେ ଚଞ୍ଚଟା ବେଶି ହେଇଯାଇଛି ।

ଶିଶିର—ଖୁବ୍ ବେଶୀ ।

ପ୍ରଶାନ୍ତ—ଏକବାରେ ଷ୍ଟରବନ୍ତ୍ ।

ତଟିନୀ—ଆରେ, ଆପଣମାନେ କାମ ବନ୍ଦ କଲେ ଯେ ! ଗୋଟାଏ ଘର ତ ନୁହେଁ,
ଆଉ ସବୁ ଘର ବି ଅଛି । ସାଉନ୍ତୁ, ସାରନ୍ତୁ, ଶୀଘ୍ର ସାରନ୍ତୁ ।

( ତଟିନୀ ଘର ଭିତରକୁ ଚାଲିଗଲା )

ଶିଶିର—ଏଥର ଜାଣିଲୁ ?

ପ୍ରଶାନ୍ତ—ହଁ, ଜାଣିଲି ।

ଶିଶିର—ଅବନୀ, ତୁ ?

ଅବନୀ—ମୁଁ—ଜାଣିଲି ନାହିଁ, ଦେଖିଲି ।

ଶିଶିର—ଦେଖିଲୁ ?

ଅବନୀ—ହଁ, ଜାଣିଲି, ଦେଖିଲି, ଅନୁଭବ କଲି ।

ଶିଶିର—କ'ଣ ?

ଅବନୀ—Acting…Acting…ଅଭିନୟ…

ପ୍ରଶାନ୍ତ—ସୁନ୍ଦର କି sweet !

ଶିଶିର—ଖାଲି କ'ଣ sweet ?

ଅବନୀ—ନା, ଖାଲି sweet ନୁହେଁ, sweet, smart, sharp.

ପ୍ରଶାନ୍ତ—ଦେଖିଲେ ପଚାରିବାକୁ ଇଚ୍ଛା ହୁଏ, ସେଇ କବିଙ୍କ ଭାଷାରେ…

"ଝିଅ ନୂଆବୋଉ
ଅଛି କି ତୁମର ଭଉଣୀ ଆଉ ?"

[ ଧୀରାଜ ନାମକ ଜଣେ ଯୁବକର ପ୍ରବେଶ । False aristocracyର ସମସ୍ତ ଲକ୍ଷଣ ତା'ର ବେଶପୋଷାକ, ଚାଲିଚଳଣ ଓ ବ୍ୟବହାରରେ ତା'ର ସୁସ୍ପଷ୍ଟ ଭଉଣୀ 'ଡଲି' କଲେଜ ଷ୍ଟୁଡ଼ୀ । ତନ୍ମୟର ବାପାଙ୍କର bank balance ଓ ସାମାଜିକ ପ୍ରତିପତ୍ତି ଭାଇଭଉଣୀ ଦୁହିଙ୍କ ଆଖିରେ ଲାଗିଛି । ସେଇଥିପାଇଁ ସେ ଜାଲ ବିଛାଇବାକୁ ଆସିଛି ]

ଧୀରାଜ—ରିହର୍ସାଲ ହେବାର କୌଣସି ଯୋଗାଡ଼ ତ ମୁଁ ଏଠି ଦେଖୁନି ?

ଶିଶିର—କାହିଁ, ଧୀରାଜବାବୁ ! ଆମ ଯୋଗାଡ଼ରେ କେଉଁଠି ତ୍ରୁଟି ଅଛି ଆମେ ତ ଠିକ୍ ବୁଝିପାରୁନୁ ?

ଧୀରାଜ—( ଅଙ୍ଗଭଙ୍ଗୀ ଦେଖାଇ ) କାହିଁ ? ଏଠି ତ artists କାହାରିକି ଦେଖୁନି !

ପ୍ରଶାନ୍ତ—ଏଇ···ଆମେମାନେ···

ଧୀରାଜ—( ଗର୍ବ ଓ ଦାମ୍ଭିକତାର ଭାବ ଦେଖାଇ ) କାହିଁ, ମୋ ଭଉଣୀ ଯୋଉଠି ସେଠି role କରିବାକୁ ଯାଏନି । ତା'ର ଗୋଟେ prestige ଅଛି ।

ଅବନୀ—ଆମର ବି prestige ଅଛି ।

ଧୀରାଜ—ବାଜେ କଥା ବକନ୍ତୁନି ।

ଶିଶିର—ଆଚ୍ଛା, ବସନ୍ତୁ ଥାଅନ୍ତୁ । ଆମେ ଆପଣଙ୍କ ଭଉଣୀଙ୍କ prestige ବିଷୟରେ ଖୁବ୍ ସଚେତନ ।

ପ୍ରଶାନ୍ତ—Intoroduce ହେଲେ ( ଅଭିନୟ କରି ) I am so glad to meet you କହିବା, ତା'ପରେ ଦେଖିଲେ 'ହାଏ' 'ହାଏ' କହିବା, ଫୁଲତୋଡ଼ା ଦେଇ ଅଭିନନ୍ଦନ ଜଣାଇବା, ହାତ ଧରି ଗାଡ଼ିରୁ ଓହ୍ଲାଇ ଆଣିବା, ଆଉ ଗଲାବେଳେ 'ଟା' 'ଟା' କହି ବିଦାୟ ଦେବା ଆମକୁ ବି ବେଶ୍ କରିଆସେ ।

ଧୀରାଜ—( ରାଗିଯାଇ ) Shut up ! ତନ୍ମୟ କାହିଁ ?

ଅବନୀ—ତନ୍ମୟ ?

ଧୀରାଜ—ହଁ, କେବଳ ସିଏ ଅଛି ବୋଲି ମୁଁ ଏଠିକି ଆସିଥିଲି । ଆଉ ଡଲି ବି କହୁଚି, ତନ୍ମୟକୁ ନ ଦେଖିଲେ ସିଏ ଗାଡ଼ିରୁ ଓହ୍ଲାଇବ ନାହିଁ ।

ଶିଶିର—କ୍ଷମା କରିବେ, ତନ୍ମୟ ଆଜି ନାହିଁ ।

ଧୀରାଜ—ନାହିଁ ? ତା'ହେଲେ ମୁଁ ଏଠିକି ଆସି···

ପ୍ରଶାନ୍ତ—ତନ୍ମୟ ନାହିଁ ବୋଲି ଆଜି ତ ରିହର୍ସାଲ ବନ୍ଦ ନାହିଁ, proxy ଚାଲିଚି ।

ଧୀରାଜ—Proxy !

ଅବନୀ—ହଁ, ଚାଲନ୍ତୁ, ଡଲି ଦେବୀଙ୍କ ଆଗରେ ମୁଁ ଆଜି ତନ୍ମୟ ପାଇଁ proxy ଦେଇ କ୍ଷମା ମାଗିନେବି ।

ଧୀରାଜ—ଚୁପ୍ କରନ୍ତୁ ! ଆପଣମାନେ ଭଦ୍ରତାର ସୀମା ଟପି ଯାଉଚନ୍ତି । ମୋର ଆଉ ଏଠି ଗୋଟିଏ ମିନଟ ବି ରହିବା ଉଚିତ ନୁହେ । ଡଲି ବି ଏଠିକି ଆଉ ଆସିବନି ।

ଶିଶିର—ଆଜ୍ଞା ! ଆଉ ଏଠିକି ଆସିବା ଦରକାର ନାଇଁ ।

ଧୀରାଜ—Is it ?

ପ୍ରଶାନ୍ତ—ହଁ, ତନ୍ମୟ ଜୀବନର ନାୟିକା ଆସି ପହଞ୍ଚିଯାଇଚନ୍ତି ।

ଧୀରାଜ—ନାୟିକା ! !

ଅବନୀ—ହଁ, ଧୀରାଜବାବୁ, ତନ୍ମୟର ବାସ୍ତବ ଜୀବନର ନାୟିକା, ଅର୍ଥାତ୍ ତାଙ୍କ ସ୍ତ୍ରୀ···

ଶିଶିର—ଅର୍ଥାତ୍ ଆଜି ସକାଳୁ ଏ ଘରର ସମସ୍ତ ଦାୟିତ୍ୱ ବହନ କରି ସାରିଚନ୍ତି ।

ଧୀରାଜ—( ଆଶ୍ଚର୍ଯ୍ୟରେ ) ତନ୍ମୟର ସ୍ତ୍ରୀ ! ! ଆପଣମାନେ କ'ଣ ସ୍ୱପ୍ନ ଦେଖୁଚନ୍ତି ?

ପ୍ରଶାନ୍ତ—ଆଜଯାଏ ଦେଖୁଥିଲୁ···

ଅବନୀ—ହେଲେ ଆଜି ସ୍ୱର୍ଗ ଚୁରମାର ହୋଇଯାଇଚି ।

ଶିଶିର—ଆପଣଙ୍କର ବି ଖୁବ୍ ଶୀଘ୍ର ସେଇ ଦଶା ହେବ ।

ଧୀରାଜ—( ବିରକ୍ତିରେ ) All rubbish ! ଏ ସବୁ ଜାଣିଥିଲେ ମୁଁ ଏଠିକି ଆସି ନ ଥାନ୍ତି । ( ବାହାରୁ ମଟର ହର୍ଣ୍ଣ ବାଜୁଛି )

ଧୀରାଜ—ଯାଉଚି, ଡଲି···( ବାହାରକୁ ଇଙ୍ଗିତ କରି ଚାଲିଯାଉଛି )

ପ୍ରଶାନ୍ତ—ଯାହାହେଉ, ଶନିଗ୍ରହଟା ବିଦା ହୋଇଗଲା ।

ଅବନୀ—ହେଲେ ଆମେମାନେ ଏଠୁ କେମିତି ବିଦା ହେବା ସେକଥା ଆଗେ···

ଶିଶିର—ଖୁଡ଼ିଜ ତ ଯନ୍ତ୍ରାରେ ପକେଇଚନ୍ତି···

ପ୍ରଶାନ୍ତ—ଠିକ୍ କହୁଚୁ, ଯନ୍ତ୍ରା । ଆମେ କଏ, ଝାଡ଼ୁ କଏ !

ଅବନୀ—ଆମ ବାପା ଅଜା ଚିରୁନଆଡ଼ରେ ଝାଡ଼ୁ କଏ ଦେଖି ନ ଥିବେ ।

ଶିଶିର—ମା କଷ୍ଟକଚଣ୍ଡୀ !

ଅନ୍ୟ ଦୁଇଜଣେ—ଏ ଦୁର୍ଦ୍ଦଶାରୁ ଉଦ୍ଧାର କର ମା !

[ ଇତିମଧ୍ୟରେ ସେମାନଙ୍କ ପଛପଟୁ ତଟିନୀ ଆସିଯାଇଚି । ମଝିରେ ଠିଆହୋଇ ଦୁଇଜଣଙ୍କ କାନ ଧରି କହୁଚି— ]

ତଟିନୀ—କଣ ଏତିକରେ ?

ଅବନୀ—କଣ ଖୁଡ଼ିଜ, ଆଉରି ଅଛି ?

ପ୍ରଶାନ୍ତ—ଅଛି ?

ସମସ୍ତେ ମିଶି—( ଆତଙ୍କରେ ) କ'ଣ କହୁଲେ ?

ତଟିନୀ—ହଁ, ସ୍ନା ପରେ ରୋଷେଇବାସ, ଆଳୁଧୂଆ, ବାସନମଜା···

ତିନିଜଣ—( ଅତି କରୁଣ ସ୍ୱରରେ ) ମରିଯିବୁ, ଖୁଡ଼ିଜ !

ତଟିନୀ—ମରିଯିବ କଣ ? ମୁଁ ପରା ତୁମ ପାଇଁ ସବୁ ଖାଇବାର ବ୍ୟବସ୍ଥା କରିଚି !

ଶିଶିର—କପେ ଚା' ଦେଇ ତ ଏତିକ ଖଟେଇଲଣି···

ତଟିନୀ—ଆଚ୍ଛା ! ଏଇସବୁ ପରା ରିହର୍ସାଲ । ଦିନେ ନା ଦିନେ ତ ତମେ ଘରକାମ କରିବ ।

ପ୍ରଶାନ୍ତ—ଘରକାମ ?

ତଟିନୀ—ମୋ ସାନ ଯା'ମାନେ ଆସିଲେ ସକାଳୁ ସଞ୍ଜଯାଏ ତମକୁ କାନ ଧରି ଉଠାବସା କରିବେ ।

ତିନିଜଣଯାକ—( ଆତଙ୍କରେ ) ଏଁ ! ! !

ତଟିନୀ—ହଁ, ହଁ, ସେଇଥିପାଇଁ ଆଗରୁ ତାଲିମ୍ ନେବା ଭଲ । ଆସ, ଆସ, ମୋ ସାଙ୍ଗରେ ରୋଷେଇଘରକୁ ଆସ । ସିଆଡ଼େ କେତେ କାମ ପଡ଼ିଚି ।

( କହୁ କହୁ ଆଗରେ ରୋଷେଇ ଘରକୁ ଯାଉଛି )

ତିନିଜଣ—ହଁ, ହଁ ଚାଲନ୍ତୁ, ଆମେ ଯାଉଚୁଁ···ଏଇସବୁ ରଖିଦେଇ ଯାଉଚୁଁ ।

ଶିଶିର—ବୁଦ୍ଧିଟ କଣ ଦେ ! ଏଇ ମୋଟା ମୌକା, ଚାଲ୍ ଖସିଯିବା ।

[ ପକେଇଲେ ହାତରେ ଧରିଥିବା ଝାଡ଼ୁ ପ୍ରଭୃତି ଚୂପ୍‌କରି ରଖିଦେଇ । ଡଟିନୀ ଭିତରୁ ଫେରି ତାହାଙ୍କୁ ନ ଦେଖି ]

ଡଟିନୀ—ଆରେ ! କ'ଣ କେହି କୁଆଡ଼େ ନାହାନ୍ତି ! ହେ। ଶିଶିରବାବୁ ! ପ୍ରଶାନ୍ତ-ବାବୁ ! ଅବନୀବାବୁ !

**ଅନ୍ଧାର**

—*—

## ଦ୍ୱିତୀୟ ଦୃଶ୍ୟ

[ ସମୟ ସନ୍ଧ୍ୟା ୭ଟା ହେବ । ଭିତରଘରେ ଦେଖାଯାଉଛି, ଡଟିନୀ ମଲ୍ଲୀଫୁଲ ଗୁନ୍ଥୁଛି ଓ ଗୁଣୁଗୁଣୁ ସ୍ୱରରେ ଗୀତ ଗାଉଛି । ସାଧୁଚରଣ ଇତିମଧ୍ୟରେ ଆସି ବୈଠକଖାନାରେ ଧୂପକାଠି ଗୁନ୍ଥୁଛି । ଗୀତଶେଷରେ ନମାଇଁ ଆସି ପହଞ୍ଚିଛନ୍ତି । ସାଧୁଚରଣଙ୍କୁ ଦାଣ୍ଡଘରେ ଧୂପକାଠି ଜଳାଉ-ଥିବାର ଦେଖି ]

ନମାଇଁ—କ'ଣ ବାବା ସାଧୁଚରଣ ! ତମକୁ ତ ବାବା ଯେତେବେଳେ ଦେଖୁଛି, ଖାଲି ହାଲୁକା କାମ; କ'ଣ ଭାରି କାମ ସବୁ ମା'ଙ୍କୁ ଧରେଇଦେଇଚ ? ହଁ, ସିଏ ତ ନୂଆ ଲୋକ; କହିବାକୁ ତ ତାଙ୍କର ମୁହଁ ଫିଟିବ ନାହିଁ ।

ସାଧୁଆ—ମୁଁ କଅଣ କରିବ ? ସିଏ ତ ମୋ ହାତରୁ ଛଡ଼େଇ ସବୁ କାମ...

ନମାଇଁ—ତାହିଁକି ? ତମେ ତାଙ୍କ ହାତରୁ ଛଡ଼େଇ କରୁନ ! ତାହିଁକି କରିବ ? ବଡ଼ ଝିଙ୍ଗିପିନ ।

ସାଧୁଆ—( ଗମ୍ଭୀର ହୋଇ ) ଗୋହେଇଁ, ମା'ଙ୍କ କଥା ତେମେ ଜାଣିନ ।

ନମାଇଁ—କ'ଣ ଜାଣିନ ?

ସାଧୁଆ—( ଗମ୍ଭୀର ହୋଇ ) ଦେଖେଇହେବାକୁ ସିଏ କାମ କରୁନାହାନ୍ତି ! ଘର
କାମ କରିବା ତାଙ୍କର ଗୋଟାଏ ନିଶା । ଦେଖନ୍ତୁ; ଘଡ଼ି ୮ଟା ବାଜୁଛି କି
ନାହିଁ, ସେପେଇବାର ଶେଷ । ସେଇ କାମକୁ ନେଇ ଘଡ଼ି ୧୦ ବାଜେ ।
ସେଥିରେ ପୁଣି ଏଇଟା ଲୁଣିଆ ତ ସେଇଟା ଅଲଣା ।

ନିମାଇଁ—ତୋ ମୁଣ୍ଡରେ ପରା ଗୋବର ଅଛି ।

ସାଧୁଆ—ଆଜ୍ଞା !

ନିମାଇଁ—ସେପେଇ ତ ସରିଲଣି; ମା କ'ଣ କରୁଚନ୍ତି ?

ସାଧୁଆ—ଫୁଲ···( ଗୁନ୍ଥିବାର ଅଭିନୟ କରି )

ନିମାଇଁ—ଓ ! ଫୁଲ ଗୁନ୍ଥୁଚନ୍ତି । ଭଲ, ଭଲ ।

ସାଧୁଆ—ଡାକିବି ? ଡାକିବି ( କହୁ ଭିତରକୁ ଚାଲିଯାଉଥିଲା )

ନିମାଇଁ—କହୁଛି ହେ, ଏଇଠି ଟିକା ଆସନ ପକାଇ ବସିଲି । ମା ରାଧାରାଣୀଙ୍କି ନ
ଦେଖି ମୁଁ ଯାଉନେଇଁ । ( ସାଧୁଆ ଭିତରକୁ ଚାଲିଗଲା )

[ ନିମାଇଁ ଏକ କୀର୍ତ୍ତନ ଗାଇବାକୁ ଆରମ୍ଭ କଲେ ।
ଗୀତର ମର୍ମ ହେଉଛି ରାଇକିଶୋରୀ ନିଜକୁ
ସଜାଇ ହେଉଥିବାର ବିଭିନ୍ନ କାର୍ଯ୍ୟକଳାପ,
ଯଥା—ମୁଣ୍ଡ କୁଣ୍ଡାଇବା, ଟିପା ପିନ୍ଧିବା, କଜଳ
ଲଗାଇବା, କବରୀରେ ଫୁଲ ଖୋସିବା, ଆଇନାରେ
ନିଜକୁ ଦେଖିବା ପ୍ରଭୃତି । ଗୀତର ମର୍ମ ସହିତ
ଚଟିମାର ସାଜସଜ୍ଜାର କ୍ରିୟାକଳାପ ଏକବାରେ
ମିଶିଯାଉଥାଏ । ଗୀତର ପ୍ରଥମ ପଦ ଶେଷ
ହେଲାବେଳକୁ ସାଧୁଆ ଚଟିମାକୁ କହୁଚି— ]

ସାଧୁଆ—ମା ! ସେ ଯୋଉ ଗୋସେଇଁଙ୍କ କଥା କହୁ ନ ଥିଲି, ସିଏ ଆଇଚନ୍ତି ।

ଚଟିମା—( କାନରେ ଗହଣା ପିନ୍ଧୁ ପିନ୍ଧୁ ) ତାଙ୍କୁ ବସିବାକୁ କହ, ମୁଁ ଯାଉଚି ।

ସାଧୁଆ—ମଜା, ସିଏ ପରା କହୁଚନ୍ତି ଯେ ତମକୁ ନ ଦେଖିଲେ ଯିବେନେଇଁ ।

[ ନିମାଇଁ ଗୀତର ଦ୍ୱିତୀୟ ପଦ ଆରମ୍ଭ କରନ୍ତି ।
ଶୋଇବାଘରେ ଚଟିମା ଗୁନ୍ଥିଥିବା ଫୁଲମାଳଟିକୁ
ମୁଣ୍ଡରେ ପିନ୍ଧୁଛି, ମୁଣ୍ଡରେ ଓଢ଼ଣା ଦେଉଛି,

[ ଆଇନାରେ ମୁହଁ ଦେଖିଛୁ । ଆଇନାରେ ଦେଖିଛୁ, ସାଧୁଆ ପଛପଟରେ ଠିଆହୋଇ ଦାନ୍ତ ନକୁଟୁଛୁ ]

ଛଟିମା—( ସାଧୁଆ ପ୍ରତି ) ଆରେ, ତୁ ଏଠି ଠିଆହୋଇ କ'ଣ କରୁଚୁ ? ଯା, ତେଣେ ରୋଷେଇଘରେ ବିଲେଇ ଦୁଧ ଖାଇଯିବ, ଦେଖ୍ ଯା—

[ ମୁହଁଟାକୁ ପିଚା କରି ସାଧୁଆ ସେଠାରୁ ପଳାଇଗଲା । ଛଟିମା ବୈଠକଖାନାକୁ ଆସିଲେ । ବୈଠକଖାନାରେ ସେତେବେଳେ ଗୋସେଇଁ ଏକା ଖଞ୍ଜିନ ଲହରୀ ଛୁଟେଇଛନ୍ତି । ଭଜନ ଶୁଣି ଛଟିମା ମୁଗ୍ଧ ହୋଇ ଠିଆ ହୋଇଚ । ଗୀତ ସରିଲା ବେଳକୁ ଛଟିମା ଆସି କହୁଚ— ]

ପ୍ରଣାମ ଗୋସେଇଁ !

ନମାଇଁ—ସାକ୍ଷାତ୍ ମା 'ରାଧାରାଣୀ' । ସେଇ ମୁହଁ, ସେଇ ଓଠ, ସେଇ ଆଖି···

ଛଟିମା—ନା ଗୋସେଇଁ, ସେଇ ଆଖିରେ ରାଧାରାଣୀର ଖାଲି ଲୁହ ଥିଲା । ତୁମେ ମୋତେ ସେ ନାଆଁରେ ଡାକନା ।

ନମାଇଁ—ହଁ ମା, ରାଧାରାଣୀର ସେଇ ଆଖିରେ ଲୁହ ଥିଲା, ଗୁଣ୍ଡରେ କୋହ ଥିଲା । ସେ ସବୁ ତ ସେଇ କାହ୍ନୁ ପାଇଁ···

ଛଟିନୀ—ଆଉ ସେଇ ଅପବାଦ, ଲାଞ୍ଛନା, କଳଙ୍କ ?

ନମାଇଁ—ସେ କଳଙ୍କ ନୁହେଁ ମା, ସେ ରାଧାରାଣୀ ମଥାର ଚନ୍ଦନ । ସେଇ ତା'ର ଗର୍ବ, ଗଉରବ, ଜୟମାଳ । ତୁ ପରା ବସି ଫୁଲ ଗୁନ୍ଥୁଥିଲୁ ! କହିଲୁ, କେତେଥର ଅଜାଣତରେ ତୋ ହାତରେ ଛୁଞ୍ଚ ଫୋଡ଼ି ହୋଇଯାଇଚ ?

[ ଜଳରେ ଝାଉଁଳିପଡ଼ିଲା ଛଟିମା ; ମୁହଁ ତା'ର ତଳକୁ ହୋଇଗଲା । କିନ୍ତୁ ଓଠରେ ତାର ଥିଲା ହସ ]

ନମାଇଁ—(ଛଟିମାର ଭାବ ବୁଝି ପାରି) ହଁ, ଥରେ ନୁହେଁ ମା, ଅନେକଥର ହୋଇଥିବ । ମନ ଉଆନଆଳେ ଯେଉଁ ପଶାପାଲି ଖେଳ···ସେଥିରେ ଏ ସବୁ ହୁଏ, ମା !

ଛବିମା—( ଜୋରରେ ଡାକନ୍ତି ) ସାଧୁଆ ! ଗୋସେଇଁଙ୍କି କ'ଣ ଦେଇଯା ।

ନମାଇଁ—ନା, ମା, କିଛି ଦରକାର ନାହିଁ, ତୋତେ ଦେଖି ମୋର ପେଟ ପୂରି-
ଯାଇଚ । ମୁଁ ତ ଏ ଘରକୁ ପିଠା ନବାକୁ ଆସେ ନାହିଁ । ଏ ଘରେ ଅଛି
ମୋର ସରଲକ୍ଷ୍ମଣୀଝିଆ ତାଙ୍କୁ; ତା'ର ପାଇଁ ଆସେ, ତାକୁଇ ଦେଖିବାକୁ
ଆସେ ।

[ ନମାଇଁ ଚାଲିଯାଉଛନ୍ତି । ସାଧୁଆ ପିଠା ନେଇ
ପ୍ରବେଶ କରନ୍ତି ]

ସାଧୁଆ—ମା ! ଉପର ଥାକରେ ଯୋଉ ପିଠା ଥିଲା, ନେଇଆସିଛି; ହେଲେ
ଗୋସେଇଁ କାଆନ୍ତି ?

ଛବିମା—ଚାଲିଗଲେ ।

ସାଧୁଆ—ଆଁ, ଚାଲିଗଲେ ! ଭିକ୍ଷା ଦବାପାଇଁ ପିଠାଗୁଡ଼ା ଆଣିଥିଲି, କ'ଣ
ଫେରେଇନେବ ? ଏତେଗୁଡ଼ାଏ ପିଠା, କଣ ଫୋପଡ଼ା ହବ ?

[ଏଇ ସମୟରେ ପ୍ରବେଶ କରିଛନ୍ତି ପ୍ରଶାନ୍ତ,
ଅବନୀ, ଶିଶିର ]

ପ୍ରଶାନ୍ତ—କରେ, ଫୋପଡ଼ା ହେବ କାହିଁକି ? ଆମର ସବୁ କ'ଣ ପେଟ ଖରାପ ?
କରେ ଅବନୀ, ଅନେଇଚ କ'ଣ ?

[ତିନିଜଣ ହ'ପଟ ହଇଟା ପିଠା ନେଇଗଲେ ।
ସାଧୁଆ ମଝିରେ ଠିଆହୋଇ ଓଠ ଚିପିଛି
ଅଳ୍ପ ଧର ]

ସାଧୁଆ—ଦେଖୁଚ ମା ! କାହାପାଇଁ ଅଣିଥିଲି, କାହା ମୁହଁରେ ଗଲା !

ଅବନୀ—ସାଉଜ, କାହା ମୁହଁରେ ଦେବାକୁ ଅଣିଥିଲ ?

ଶିଶିର—'କାଉ' କି 'କୁକୁର' ହେଇଥିବ ।

ଛବିମା—ନମାଇଁ ଗୋସାଇଁ ।

ପ୍ରଶାନ୍ତ—ଓ, ନମାଇଁ ଗୋସାଇଁ ବାବାଜି ଲୋକ, ବେଶୀ ଖାଇଲେ ପେଟ ଫେଟ
ଖରାପ ହବ, କୀର୍ତ୍ତନ କରିପାରିବେ ନାହିଁ ।

ସାଧୁଆ—ମଲା, ବାବାଜି ବଇଷ୍ଣବ ଲୋକ ଖାଇକରି କଇଁଳଣ କରିଆନ୍ତେ ।

ଅବନୀ—ଆମ ପେଟ ଶାନ୍ତ ହେଲେ, ଆମେ ବି କଇଁଳଣ କରିବୁଁ ।

ତଟିନୀ—ସତେ !

ଶିଶିର—ହଁ, ପରୀକ୍ଷା କର ଦେଖ । ଆଖି ବୁଜିଲ, ଆଖି ବୁଜ ।

ତଟିନୀ—ଏଇ ବୁଜିଲି । ( ଆଖି ବୁଜିଲା )

ପ୍ରଶାନ୍ତ—ହାତ ଯୋଡ଼ ।

ତଟିନୀ—ହେଇ ଯୋଡ଼ିଲି । ( ଅଭିନୟ କରେ )

ଅବନୀ—କୁହ, ପ୍ରଭୁ, ମୋର ମନୋବାଞ୍ଛା ପୂର୍ଣ୍ଣକର !

ତଟିନୀ—( ସେଇପରି କହିଲା )

ପ୍ରଶାନ୍ତ ଓ ଶିଶିର—(ତଟିନୀର ମୁଣ୍ଡ ଉପରେ ଦୁଇପଟରୁ ହାତରଖି କହିଲେ )
ତଥାସ୍ତୁ ।

( ତଟିନୀ ହାତରେ ବହି ଖଣ୍ଡିଏ ଧରାଇଦେଲେ )

ତଟିନୀ—ଏ କଣ ?

ଅବନୀ—ମନୋବାଞ୍ଛା ।

ତଟିନୀ—କି ବହି ଏଇଟା ?

ପ୍ରଶାନ୍ତ—ଆମେ କଣ ପଢ଼ିଛୁ ?

ଶିଶିର—ଦେଖୁନ ଉପରେ କ'ଣ ଲେଖା ହୋଇଚି, 'କେବଳ ବିବାହିତମାନଙ୍କ ପାଇଁ' ।

ଅବନୀ—ତେଣୁ ଆମ୍ଭେମାନେ ଅନଧିକାର ଚର୍ଚ୍ଚା କରିବାକୁ ଉଚିତ ମନେ କରିନାହୁଁ ।

ତଟିନୀ—ଅଚ୍ଛା, ତା' ହେଲେ ଏ'ଟା ଅବିବାହିତମାନଙ୍କ ପାଇଁ ଗୋଟେ ନିଷିଦ୍ଧ ପୋଥି !

ପ୍ରଶାନ୍ତ—ପୋଥି ନୁହେଁ କି ଶାସ୍ତ୍ର ନୁହେଁ, ସାଧାରଣ ବିଜ୍ଞାନ ।

ତଟିନୀ—ବିଜ୍ଞାନ !!

ଶିଶିର—ମଲା, ତୁମର ତ ଲାଇସେନ୍‌ସ ଅଛି, ତୁମେ ଖୋଲିକରି ଦେଖୁନ !

[ପ୍ରଶାନ୍ତ ପ୍ରଭୃତି ବହି ଦେଇସାରି ପଳାଇଗଲେ ।
ତଟିନୀ ବହି ଖୋଲି ଦେଖିଲା । ଏଥିକବେଳେ
ସାଧୁଆ ପଢ଼ଆଡ଼ୁ ଉଣ୍ଡି ଆସି ମଧ ବହିଟାକୁ

ଦେଖିଲ ଏବଂ ପଢ଼ିବାକୁ ଆରମ୍ଭ କଲ ବଡ଼ ପାଟିରେ ]

ସାଧୁଆ—କ'ରେ ଆକାରେ······କା······ମ, ମିଶି ହେଲା 'କାମ'। 'ଦ'ରେ ହ୍ରସ୍ୱଇକାର 'ଦି'····· କ୍ଷା······ନ, "କାମ ଦକ୍ଷାନ।"

ତନିମା—ଚୁପ୍, ଯାଉଚୁ ଏଠୁ ! ( ସାଧୁଆ ପଳେଇଲା )

[ତନିମା ବନ୍ଦନେଇ bed roomରେ ଦେଖି ପଢ଼ିବାକୁ ଲଗିଲା। ଏଇ ସମୟରେ ବୈଠକ-ଖାନାରେ ଦେଖାଦେଲେ ତନ୍ମୟ, ପୋଲିସ ଇନ୍‌ସପେକ୍ଟର ବକାଶ ]

ତନ୍ମୟ—ସବୁ ଶୁଣିସାରିଲା ପରେ ମଧ୍ୟ ଆପଣ ମୋତେ ··

ବକାଶ—ନା, ବିଶ୍ୱାସ ହଉନ।

ତନ୍ମୟ—ହିଁ, ମୁଁ ବୁଝିପାରୁଚ, ମନେ ହଉଥିବ, ଗୋଟେ ନାଟକ, ଉପନ୍ୟାସ ବା ନଭେଲର କାହାଣୀ।

ବକାଶ—Exactly ! ଗୋଟେ ଅଜଣା ଅଶୁଣା ଝିଅ, ଯାହା ସଙ୍ଗରେ କୌଣସି ପରିଚୟ ନ ଥିଲା ବା ନାହିଁ, ସେ ହଠାତ୍ ଆସି ଏଠି ପହଞ୍ଚି ଆପଣଙ୍କୁ ତାର ସ୍ୱାମୀ ବୋଲି ଦାବୀ କରୁଚି ?

ତନ୍ମୟ—ସେଇଥିରୁ ବୁଝନ୍ତୁ କଥାଟା କ ଗୁରୁତର। ସେଇଥିପାଇଁ ତ ଆପଙ୍କୁ ଥାନାରେ ନ କହି ବସାକୁ ଡାକଅଣିଲି। ସେଠି କହିଥିଲେ କେହି ମତେ ବିଶ୍ୱାସ କର ନ ଥାନ୍ତେ। ହେଲେ ଆପଣ ଆଉ ଆପଣଙ୍କ ଷ୍ଟାଫ୍ ହସି ହସି ମୋ କଥାକୁ ଉଡ଼େଇ ଦେଇଥାଅନ୍ତେ।

ବକାଶ—ଅଚ୍ଛା ତନ୍ମୟବାବୁ, ଗୋଟେ କଥା କହନ୍ତୁ ତ !

ତନ୍ମୟ—କଣ ?

ବକାଶ—ନା, ନା, ଏଇଟାକୁ non-officially ମୁଁ ଆପଣଙ୍କୁ ପଚାରୁଚି।

ତନ୍ମୟ—କ'ଣ ପଚାରନ୍ତୁ।

ବକାଶ—ଏଇ ଝିଅଟା ସାଙ୍ଗରେ ଆପଣଙ୍କର ପତରେ କୋଉଠି ଦେଖା ହୋଇନାହିଁ ? ମାନେ, parak, picnic କିମ୍ବା excursion ?

ତନ୍ମୟ—ନା, ଆଦୌ ନୁହେଁ।

ବିକାଶ—ଅଚ୍ଛା, pen friend ship ?

ଚିନ୍ମୟ—ଦେଖନ୍ତୁ, ଆପଣ ବି ମୋତେ ବିଶ୍ୱାସ କରୁନାହାନ୍ତି ।

ବିକାଶ—ଆପଣଙ୍କୁ ନୁହେଁ, ଏଇ ଘଟଣାଟାକୁ ।

ଚିନ୍ମୟ—ତା ଅର୍ଥ, ଆପଣ ମୋତେ ଭୁଲ ବୁଝୁଛନ୍ତି ।

ବିକାଶ—ଆଜିକାଲି ମିଳାମିଶାର ସୁଯୋଗଟା ଏତେ ବେଶୀ ଆଉ ଏତେ ବ୍ୟାପକ ଯେ...

ଚିନ୍ମୟ—ମିଳାମିଶାର ପ୍ରଶ୍ନ ଆଦୌ ଉଠୁନି । ( ବିବ୍ରତ ହୋଇ ) ଆପଣଙ୍କୁ ମୁଁ କେମିତି ବୁଝାଇବି ଭାବିପାରୁନି । ଅଚ୍ଛା, ଆପଣ ନିଜ କାନରେ ଶୁଣିଲେ ତ ବିଶ୍ୱାସ କରିବେ ?

ବିକାଶ—ନିଜ କାନରେ ?

ଚିନ୍ମୟ—ହଁ, ଆପଣ ଏଇଠି ଅପେକ୍ଷା କରନ୍ତୁ । ମୁଁ ଯାଇ କଥାବାର୍ତ୍ତା କରୁଚି ।

ବିକାଶ—ଠିକ୍ ଅଛି ।

[ ଚିନ୍ମୟ ଦାଣ୍ଡଘରୁ ଶୋଇବା ଘରକୁ ଯାଇ ଚଟିମା ବହି ପଢୁଥିବା ସ୍ଥାନରେ ପହଞ୍ଚିଲେ ]

ଚିନ୍ମୟ—କ'ଣ ପଢୁଚ ?

ଚଟିମା—କିଛି ନୁହେ । ( ମୁହଁ ବୁଲାଇ ବସିଲା )

ଚିନ୍ମୟ—କିଛି ନୁହେ ! ( ବହିଟା ହାତରୁ ଟାଣି ନେଇଗଲେ । ଚଟିମା ଦି'ହାତରେ ମୁହଁ ଲୁଚାଇଦେଲା । ବହିଟା ଖୋଲିଦେଇ ଛବି ଦେଖି ଚିନ୍ମୟ ଚିତ୍କାର କରିଉଠିଲେ ) ଇସ୍, ଏଇସବୁ ବାଜେବହି ପଢୁଚ ?

ଚଟିମା—( ହସି ହସି ବିଛଣାରେ ଗଡ଼ିଗଲା ) ବାଜେ ବହି ନୁହେଁ, ଖୁବ୍ ଦରକାରୀ ବହି ।

ଚିନ୍ମୟ—ଦରକାରୀ ବହି ?

ଚଟିମା—(ହସି ହସି) ହଁ, ଉପରେ-ଦେଖୁନ, କେବଳ ବିବାହିତମାନଙ୍କ ପାଇଁ । ତମର ମୋର ପଢିବାପାଇଁ ଲାଇସେନ୍ସ ଅଛି ନା...

ଚିନ୍ମୟ—( ରାଗିଯାଇ ଜୋରରେ ) ତୁମକୁ ମୁଁ ବୁଲିଯିବାକୁ କହିଥିଲି ନା ?

ଚଟିମା—( ଏଇ କଥାଟାକୁ ଖୁବ୍ ହାଲୁକା ଭାବରେ ନେଇ ଖୁବ୍ ହସି ହସି ) ବୁଲିଯିବ ?

ତନ୍ମୟ—ତମେ ଏଠିକି କାହିଁକି ଆସିଲ ?

ତଟିନୀ—( ହସି ହସି ) ଆଚ୍ଛା, ଏଇ କେତେଦିନ ଭିତରେ ତମେ ଏଇ କଥାଟାକୁ

ମୋତେ କେତେଥର ପଚାରିଚ, କହିଲ ?

ତନ୍ମୟ—ହଁ, ପଚାରିଚ ଆଉ ଆଜି ମଧ୍ୟ ପଚାରୁଚ ।

ତଟିନୀ—ମୁଁ ତା'ହେଲେ ସବୁଦିନେ ଯେଉଁ ଉତ୍ତର ଦିଏ ଥାଜି ବି ସେଇ ଉତ୍ତର

ଦେବି ।

ତନ୍ମୟ—କ'ଣ ତମର ଉତ୍ତର ?

ତଟିନୀ—ତମର କ'ଣ ଭୟ ହେଉଚି ? ମୋ ଉତ୍ତର ହେଲା···

ତନ୍ମୟ—ଭୟ କାହିଁକି ହବ ?

ତଟିନୀ—ତା'ହେଲେ ମତେ ଏମିତି ଦୂର୍ ଦୂର କରୁଚ କାହିଁକି ? ବାହାହେଲା

ପରେ କୋଉ ଝିଅ ବାପଘରେ ରହେ ?

ତନ୍ମୟ—କୋଉ ବାହାଘର ? କାହା ସାଙ୍ଗରେ ହେଲା ?

ତଟିନୀ—( ଖୁବ୍ ଜୋରରେ ହସିଚି ) ବାହାଘର ଦିନଟା ବି ଭୁଲିଗଲ ? ଆଉ

କେତେଦିନ ଗଲେ ମତେ ବି ଭୁଲିଯିବ ।

ତନ୍ମୟ—( ଜୋରରେ ) ତଟିନୀ !

ତଟିନୀ—ନା, ମୁଁ ତମକୁ ଛାଡ଼ି ଯିବନାହିଁ, ଯିବନାହିଁ ।

[ଭିତରକୁ ଚାଲିଗଲା । ତନ୍ମୟ ତା ପଛରେ
ଚାଲିଯାଉଥିଲା । ବିକାଶ ହାତରେ ଧରିଥିବା
ପୋଲିସ ବାଡ଼ିରେ ସୋଫାସେଟ୍ ଉପରେ ଠକ୍
ଠକ୍ କରିବାରୁ ତନ୍ମୟ ତା' ପାଖକୁ ଚାଲିଆସିଲା ]

ବିକାଶ—ଦେଖନ୍ତୁ, ତନ୍ମୟବାବୁ ! ଭଲ ଅଭିନେତା ବୋଲି ଆପଣଙ୍କର ସୁନାମ

ଅଛି; କିନ୍ତୁ ବାସ୍ତବ ଜୀବନରେ ଅଭିନୟଟା ଆଦୌ ଭଲ ନୁହେଁ । ଆପଣ

ଭଲ ଘରର ପିଲା । କଲେଜର ଭଲ ଛାତ୍ର । ପୂର୍ବପୁରୁଷଙ୍କର ସୁନାମ ମଧ୍ୟ

ଅଛି । ଆପଣଙ୍କର ବାପା ଜଜାଙ୍କର ନା ପଡ଼ିବ । ଏମିତି ଗୋଟେ

scandal ହବା ଭଲ ନୁହେଁ ।

ତନ୍ମୟ—( ଅଧୈର୍ଯ୍ୟ ହୋଇ ) ଆପଣ ମୋ କଥାଟା ପୁରା ନ ଶୁଣି···

ପ୍ରକାଶ—ଆଉ ବେଶି ଶୁଣିବା ଦରକାର ନାହିଁ; ମୋର investigation ସରିଯାଇଛି ।

ଚନ୍ଦ୍ରଚୂଡ଼—ପ୍ରକାଶବାବୁ !

ପ୍ରକାଶ—ଅଯଥା ବାହ୍ୟିକ scandal ହେବ, ଆପଣ ଟିକେ ଧୈର୍ଯ୍ୟରେ ଗ୍ରହଣ କରନ୍ତୁ ।
( ଚାଲିଯାଉଥିଲେ )

ଚନ୍ଦ୍ରଚୂଡ଼—କ'ଣ କହୁଥିଲେ ?

ପ୍ରକାଶ—ସହରରେ ଦ୍ରୁତ ପରିବର୍ତ୍ତନ, trafic accident ବଢ଼ୁ ପଡ଼ୁଥିବାରେ ବଢ଼ିଯାଉଛି । ସେଥିରେ ଆମର ସବୁ ସମୟ ଆଉ energy ଚାଲିଯାଉଛି । ଏସବୁ romantic affair ନେଇ ମୁଣ୍ଡ ଖେଳାଇବାକୁ ଆମର ବେଳ କାହିଁ ? ( ଚାଲିଗଲେ )

ଚନ୍ଦ୍ରଚୂଡ଼—ପ୍ରକାଶବାବୁ, ପ୍ରକାଶବାବୁ ! ( ପ୍ରକାଶ ପଛରେ ଚାଲିଯାଉଥିଲେ )

ଚନ୍ଦ୍ରିମା—( ଭିତରୁ ଆସି ) ଶୁଣ !

ଚନ୍ଦ୍ରଚୂଡ଼—( ଗମ୍ଭୀର ହୋଇ ) କ'ଣ ?

ଚନ୍ଦ୍ରିମା—ବଜାରକୁ ଯାଇ କେତୋଟା ଜିନିଷ ନେଇ ଆସିଥାଆନ୍ତୁ !

ଚନ୍ଦ୍ରଚୂଡ଼—( ସେଇମିତି ଗମ୍ଭୀର ସ୍ୱରରେ ) କ'ଣ ?

ଚନ୍ଦ୍ରିମା—ଟିକେ ରୁହ, ମୁଁ listଟା କାଢ଼ି ପଢ଼ୁଛି । ( List କାଢ଼ି ପଢ଼ିଲେ—) ଶାଢ଼ୀ, ଚୁଡ଼ି, ଅଳତା, ସିନ୍ଦୂର, ଧୂପକାଠି, କର୍ପୂର ।

ଚନ୍ଦ୍ରଚୂଡ଼—ଏସବୁ କ'ଣ ହେବ ?

ଚନ୍ଦ୍ରିମା—ଅହା, ସରିନି ମୋ listଟା—ଆମ୍ବ, ପଣସ, ସପୁରୀ, ନଡ଼ିଆ, କଦଳୀ, କେନ୍ଦୁଫଳ । କାଲି ଅମାବାସ୍ୟା ।

ଚନ୍ଦ୍ରଚୂଡ଼—ଅମାବାସ୍ୟା ?

ଚନ୍ଦ୍ରିମା—ହଁ, ସାବିତ୍ରୀ ଅମାବାସ୍ୟା । ସବୁ ଗୋଟି ଗୋଟି ମନେକରି ଆଣିବ । ଗୋଟାଏ ଗୁଡ଼ିଗଲେ ଚଳିବନି । ଶାଢ଼ୀଟା ଆଣିବ ସମ୍ବଲପୁରୀ—ଧଡ଼ି ନ ଥିବା କଲେଜ ଝିଅଙ୍କ ଶାଢ଼ୀ ନୁହେଁ । ପଡ଼ଶାଘରୁ ଯେତେସବୁ ମୋର ଈର୍ଷା ହେଲେଣି ନା, ଦେଖିଲେ ହସିବେଟି ! ( ହାତରୁ ଗୋଟେ ଚୁଡ଼ି କାଢ଼ି ) ଆଉ ଏ ଚୁଡ଼ିମାପଟା ନିଅ, ଠିକ୍ ମିଶାଇକରି ଆଣିବ ।

[ ହାତରେ ଚୂଡ଼ି ଓ ଲିଷ୍ଟଧରି ତନ୍ମୟ ଠିଆ ହୋଇଛି କାଠଭଳି । ତଟିନୀ ଭିତରକୁ ଚାଲିଯାଇଛି ]

ତନ୍ମୟ —(ସ୍ୱଗତ ବଦ୍ରୋହ କରି ) ମୁଁ ଏସବୁ ପାରିବନି; ନା ! ( ଚିତ୍କାର କରିଛି )

[ ଧୀରଜ ଆସି ଇତିମଧ୍ୟରେ ବୈଠକଖାନା ବାହାରେ ଥାଇ ତନ୍ମୟ ଓ ତଟିନୀର କଥା ଶୁଣିଛି, ତଟିନୀ ଚାଲିଯିବା ପରେ ବୈଠକ-ଖାନାକୁ ପଶିଆସି ]

ଧୀରଜ—ପାରିବନି ! ( ଉପହାସ କରି ହସିଲା )

ତନ୍ମୟ—ଆରେ, ଧୀରଜବାବୁ ଯେ !

ଧୀରଜ—ହଁ । ( ଗମ୍ଭୀର ହୋଇ )

ତନ୍ମୟ—ଶୁଣିଚନ୍ତି ଘ୍ୱା ଭିତରେ କ'ଣ ହେଉଚ ଏଠି ?

ଧୀରଜ –ହଁ, ଶୁଣିଥିଲି, ଆଜ କନ୍ତୁ ନିଜ ଆଖିରେ ଦେଖିଲି ।

ତନ୍ମୟ—କ'ଣ ଦେଖିଲେ ?

ଧୀରଜ—ଏଇ ନବବିବାହିତ ଦାମ୍ପତ୍ୟ ଜୀବନ ।

ତନ୍ମୟ—ଆପଣ କିଛି ନ ଜାଣି···

ଧୀରଜ—ଯେତିକ ଜାଣିଛି, ସେତିକ ଯଥେଷ୍ଟ । ତା'ଠାରୁ ବିଶେଷ କିଛି ଜାଣିବା ଦରକାର ନାହିଁ ।

ତନ୍ମୟ—ଆପଣ ଏସବୁ ବିଶ୍ୱାସ କରୁଚନ୍ତି ?

ଧୀରଜ—ଅବିଶ୍ୱାସ କଲାଭଳି ତ କିଛି ନାହିଁ ।

ତନ୍ମୟ—ସବୁ ମିଛ, ସବୁ ଭୁଲ । ( ଚିତ୍କାର କରିଛି )

ଧୀରଜ—ସାଚ ଦୁନିଆଟାକୁ ଠକିବାକୁ ଚେଷ୍ଟା କର ନାହିଁ, ତନ୍ମୟ !

ତନ୍ମୟ—ମୁଁ ତ କାହାକୁ ଠକିନ

ଧୀରଜ—University drama festivalରେ 'ଡଲି' ସାଙ୍ଗରେ ତମର ପରିଚୟ । ତା ପରେ ଅନେକ ଥର ତମେ ଆମ ଘରକୁ ଆସିଚ । ଭଦ୍ରଘରର ପିଲା । ତମର ବାପା ସମ୍ଭ୍ରାନ୍ତ, ଶିକ୍ଷିତ । ଏସବୁ ଜାଣି 'ଡଲି' ସାଙ୍ଗରେ ତୁମକୁ ମିଳାମିଶାର ସୁଯୋଗ ଆମେ ଦେଇଥିଲୁ···

ତନ୍ମୟ—ମୋ ତରଫରୁ ମୁଁ ତ କିଛି ଭୁଲ୍...

ଧୀରାଜ—ଏଇଟା ତମେ କହିପାରୁଚ ? ତା'ହେଲେ ଶାଢ଼ୀ, ଅଳତା, ସିନ୍ଦୁର ଏସବୁ କ'ଣ ? ଏସବୁ କାହିଁକି ?

ତନ୍ମୟ ବିଶ୍ୱାସ କରନ୍ତୁ, ସବୁ ମିଛ ।

ଧୀରାଜ—ମୁଁ ଅବୋଧ ନୁହେଁ ।

ତନ୍ମୟ—( ରାଗିକରି ) ତା'ହେଲେ କ'ଣ ଅବୋଧ ମୁଁ ?

ଧୀରାଜ—ହଁ ତମେ । ତା' ନ ହୋଇଥିଲେ ବାରିଷ୍ଟର ଧୀରାଜର ଭଉଣୀ 'ଡଲି' ଭଳି ଝିଅକୁ ଛାଡ଼ି ତମେ ଦୌଡ଼ି ଅଜଣା ଅଶୁଣା...

ତନ୍ମୟ—( ଚିତ୍କାର କରି ) ଧୀରାଜ ବାବୁ !

ଧୀରାଜ—I am sorry. ନିଜ choice ଅନୁସାରେ ବିବାହ କରିବାର ଅଧିକାର ସମସ୍ତଙ୍କର ଅଛି । ଆଜିକାଲି ଇଏ ବି କିଛି ନୂଆ କଥା ନୁହେଁ । କିନ୍ତୁ ଏଇଆ ଯଦି ତମ ମନରେ ଥିଲା, 'ଡଲି' ଭଳି ଗୋଟେ ଝିଅକୁ ନେଇ ତମେ ଖେଳ ଖେଳୁଥିଲ କାହିଁକି ?

ତନ୍ମୟ—ଖେଳିଚି ମୁଁ ?

ଧୀରାଜ—ତମ ପ୍ରଶ୍ନର ଉତ୍ତର ଦବାକୁ ହେଲେ ମତେ ଡଲିକୁ ଟାଣି ଆଣିବାକୁ ପଡ଼ିବ । ମୁଁ ଚାହେଁନା ତାକୁ ମଝିରେ ରଖି ଆମେ ଦୁହେଁ ଆଜି ଯୁକ୍ତିତର୍କ କରିବା । ସେଥିରେ ଲାଭ ହେବ Scandal; ବରଂ ଡଲି ଯଦି ଏଠିକି ଆସେ ସେ ହାତରେ ନେଇଆସିବ ଫୁଲତୋଡ଼ା, ଆଉ ତୁମ ଦୁଇଜଣଙ୍କୁ ଜଣାଇଯିବ ନବବିବାହର ଶୁଭେଚ୍ଛା, ଆଉ ଅଭିନନ୍ଦନ ।

ତନ୍ମୟ—ଧୀରାଜବାବୁ !

ଧୀରାଜ—Don't worry, ସବୁ ସହିଲା ଭଳି ଗୁଣ 'ଡଲି'ର ଅଛି । ସେ ତମକୁ କ୍ଷମା କରିପାରିବ । ( ଧୀରାଜ ଚାଲିଯାଇଛି । ତନ୍ମୟ କାଠ ଭଳିଆ ଛିଡ଼ା ହୋଇଛି । ଆସିଛି ଶିଶିର )

ଶିଶିର—ବୁଝିଲୁ ତନ୍ମୟ, ଆଉ ଗୋଟେ ରିହର୍ସାଲ କରିବା ଜାଗା ଖୋଜି ପାଇଚୁ, ସାରଙ୍କ ଅନୁମତି ନେଇ ତୋତେ ସେଠିକି ଯିବାକୁ ପଡ଼ିବ । ଆରେ, ଇଏ କ'ଣ, ହାତରେ ଚୂଡ଼ି !

କାଚଘର

(ହାତରୁ list ଟାଣି ନେଇ ପଢ଼ିଲ) ସାବତ୍ରୀ ଅମାବାସ୍ୟାର marketing କର ବାହାରିଚ ? Congratulations ଷଣ୍ଢି ଧନ୍ୟବାଦ । ଆରେ, list ଟା ଲେଖିଚ କଏ ? ଭାଉଜ ନା ? ଯାହା କହ, ଚମତ୍କାର ଅକ୍ଷରଗୁଡ଼ାକ, ବାଇଗଣ ମଞ୍ଜି—ଶାଢ଼ୀ, ଚୂଡ଼ି, ସିନ୍ଦୂର, ଅଳତା, ଅମ୍ବ, ପଣସ, କଦଳୀ, କମଳା ... ... ...

ଅନ୍ଧାର

—❊—

## ତୃତୀୟ ଦୃଶ୍ୟ

[ ପୃଷ୍ଠଭୂମିରେ ଶଙ୍ଖ ହୁଳହୁଳି ସହିତ ମହିଳାମାନଙ୍କର କଳରବ ଓ ନାରୀକଣ୍ଠରେ ସାବତ୍ରୀ ବ୍ରତ କଥା ପଢ଼ିବାର ଶବ୍ଦ । ସାଧୁଆ ଗୋଟିଏ ଥାଳିରେ କଣ ଅଣି ଚରଚର କରି ଖାଇ ଯାଉଥିଲ ଓ ବୈଠକଖାନାରୁ ଶୋଇବା ଘରକୁ ଓ ଶୋଇବାଘରୁ ବୈଠକଖାନାକୁ ଇତସ୍ତତଃ ଯିବାଆସିବା କରୁଥିଲ । ଇତିମଧ୍ୟରେ ନମାଇଁ ବୈଠକଖାନା ଭିତରକୁ ପଶିଆସିଲେ ଓ ସାଧୁଆକୁ ଦେଖି ]

ନମାଇଁ—କ'ଣ ମା ନାହାନ୍ତି କି ?

ସାଧୁଆ—ଗୋସେଇଁ, ଜୁହାରେ !

ନମାଇଁ—ଥାଉ, ଥାଉ, ଅଇଁଠା ହାତରେ ଆଉ ଦଣ୍ଡବତ ହଅନା ।

ସାଧୁଆ—( ଦାନ୍ତ ଦେଖେଇ କହିଲ ) ମା ଯାଇଚନ୍ତି···ପଣ୍ଡଣା ଘରେ ସାବତ୍ରୀ ପୂଜା ।

ନମାଇଁ—ହଁ, ସିଆଡ଼େ ପଣ୍ଡଣା ଘରେ ସାବତ୍ରୀ ପୂଜା, ଏଠି ତୋ ପେଟ ପୂଜା ।

ସାଧୁଆ—ନାଇଁ ଗୋସେଇଁ, ଏଇ ପିଠାଗୁଡ଼ାକ ମୂଷା ଗୁଣ୍ଡିଦେଇଥିଲ ଯେ···

ନମାଇଁ—ମୂଷା ! ଗଣପତିଙ୍କ ବାହନ, ମୂଷିକ···

ସାଧୁଆ—ହଁ, ସେଇଥିପାଇଁ ମା କହୁଥିଲେ ଫିଙ୍ଗିଦବାକୁ ।

ନମାଇଁ—ମୂଷା କଥା ମା କମିତି ଜାଣିଲେ ?

ସାଧୁଆ—ମଲ, ମୁଁ ପରା ଦେଖିକରି ମା'ଙ୍କୁ କହିଲି ।

ନମାଇଁ—କ'ଣ ଦେଖିଲ ?

ସାଧୁଆ—ସକାଳୁ ପିଠାହାଣ୍ଡିର ଢାଙ୍କୁଣୀଟା ଖୋଲିବା ବେଳକୁ ଦି'ଟା ମୂଷା ଖପ୍‌ଖାପ୍ କରି ଡେଇଁ ବାହାରକୁ ପଳେଇଲେ ।

ନମାଇଁ - ହଁ, ବୁଝିଲି । ହେଲେ ଗୁଣ୍ଡିଲେ କେତେବେଳେ ?

ସାଧୁଆ—ପଶିଥିଲେ ଯେତେବେଳେ ଆଉ ଗୁଣ୍ଡି ନ ଥିବେ !

ନମାଇଁ—ଗଣେଶ ପିନା ତମକୁ ଦୟା କଲେ ନ, ହେଲେ ମୂଷାଙ୍କର ତମ ଉପରେ ଖୁବ ଦୟା !

ସାଧୁଆ—ଗୋସେଇଁ, ତମେ ତ ଇମିତି କହୁଚ···( ମୁଣ୍ଡ କୁଣ୍ଡେଇହେଲା )

ନମାଇଁ—ଇମିତି ମୂଷା, ବଲେଇ, କୁକୁର ନାଁ କହି ବେଶ୍ ଚଲେଇଚ । ପେଟ ତ ନୁହେଁ, ଗୋଟେ ସମୁଦ୍ର ।

ସାଧୁଆ—କଥା କଣ କି ଗୋସେଇଁ ଅଭ୍ୟାସଟା ପିଲାଦିନୁ । ମୁଁ ତ ଏକେ ମା' ଛୁଅଣ୍ଡ । ମୋ ଉପରେ ତିନଟା ପିଲା, ଜନେ ଦି'ଟା ପିଲା ଠକ୍‌ଠାକ୍ ହେଇ ମରିଗଲେ । ରହିଲି ମୁଁ ଗୋଟିଏ, ବୋଉ ତ ଖାଲି ଖୋଇଲା··· ଆଉ ମଲାବେଳକୁ କହିକରି ଗଲା—'ବାପ ସାଧୁରେ, ପେଟ କେବେ ଊଣା କରିବୁନ ।'

ନମାଇଁ—ଯାହାହେଉ, ବୋଉ ମରିଗଲେ ବି କଥାଟା ଢ଼ ଠିକ୍ ପାଳିଚ ।

ସାଧୁଆ—ନାଇଁ ଗୋସେଇଁ, ଆଉ ଆଗଭଳିଆ ନାଇଁ । ଏଇ ମା' ଆସିଲା ଦିନୁ ଭଣ୍ଡାର ଘରେ ତାଲା, ରୋଷେଇଘରେ ତାଲା, ପଇସାପତ୍ରର ହିସାବ । ଦେଖୁନା ମୋ ଦେହ ଝଡ଼ିଗଲାଣି ।

ନମାଇଁ—ହଁ, ଦେଖୁଚ, ମା ଆସିଲା ଦିନରୁ ଏ ଘରର ସମସ୍ତେ ଠିକଣା ହେଇଯାଇଚନ୍ତି ।

ସାଧୁଆ—( ବିକଳରେ ) ଆଜ୍ଞା, ସାନବାବୁଙ୍କୁ ଦେଖନ୍ତୁ ! ଆଖଡ଼ା କରି ସାରା ଅଧ ହେଉଥିଲ, ଆଉ ଅଛୁ !

ନମାଉଁ—କାହିଁକି ? ସାଙ୍ଗସାଥିମାନେ ଆସୁନାହାନ୍ତି ?

ସାଧୁଆ—ହଁ ଆସୁଛନ୍ତି, ହେଲେ କଡ଼ା ତାଗିଦା, ଘରୁ ବାହାରକୁ ଯିବା କିଛି ଦରକାର ନାହିଁ ।

ନମାଉଁ—ସେଇ ଭଲ, ସେଇ ଭଲ ।

ସାଧୁଆ—( ଫିସ ଫିସ କରି କାନରେ କହୁଛି ) ଭଲ କ'ଣ ମ ଗୋସେଇଁ !

ନମାଉଁ—କରେ, କ'ଣ ହେଉଛି କରେ ?

ସାଧୁଆ—( ଫିସ୍ ଫିସ୍ କରି ନମାଉଁଙ୍କ କାନରେ କହୁଛି ଘରକୁ ଇଙ୍ଗିତ କରି ) ସାରା ହେଲେ ସାନବାବୁ ଖଟ ଉପରେ ଶୋଉଛନ୍ତି ।

ନମାଉଁ—ଆଉ ମୋ ବୁଧାଗାଈ ?

ସାଧୁଆ—ଶୋଇବାଘରେ ।

ନମାଉଁ—( ହସି ହସି ) ଓ, ତା' ହେଲେ ଗୋଟେ ମାନ ଅଭିମାନ ଚାଲିଛି, ନା ! ସେମିତି ହୁଏ, ସେମିତି ହୁଏ । ଏଇ ମାନ ଅଭିମାନ, ରାଗ ରୁଷା ନ ଥିଲେ କିଛି ହୁଏନି ।

[ ମାନଅଭିମାନ ମିଶା ଗୀତ ଗାଇ ଗାଇ ନମାଉଁ ଚାଲିଗଲେ । ସାଧୁଆ ଶୋଇଲାଘରକୁ ଗଲା । ପୃଷ୍ଠଭୂମିରେ ଶୁଭିଲା ଫେ ହୁଳହୁଳି ଓ ସାବିତ୍ରୀ ବ୍ରତ ଶେଷ ହେବାର ଗୀତ । ଏଇ ସମୟରେ ଚନ୍ଦ୍ରଘ ତା'ର ଓକିଲ ବନ୍ଧୁ ରଣଜିତଙ୍କୁ ସାଙ୍ଗରେ ଧରି ଘରେ ପଶିଲା । ରଣଜିତ୍ ଚନ୍ଦ୍ରଘଠାରୁ ସବୁ ଶୁଣିବାପରେ ଉତ୍ତେଜିତ ଅବସ୍ଥାରେ ଥିଲା ]

ରଣଜିତ୍—କାହିଁ କୋଉଠି ସେ ଝିଅଟା ? ଡାକିଲୁ ତାକୁ ।

ଚନ୍ଦ୍ରଘ—ଆହା, ଆସ୍ତେ ! ପାଟି କରୁଚୁ କାହିଁକି ?

ରଣଜିତ୍—କାହିଁକି, ମୁଁ କ'ଣ ଡରିଚି ; କୋର୍ଟ କଚେରୀରେ ଲୋକେ ମତେ କ'ଣ କୁହନ୍ତି ଜାଣିଚୁ । "ମହାବଳ ବାଘ" । ଆଇନ ବହି ମୋ ମୁହେଁ ମୁହେଁ । କେତେ କେତେ ଯିନ୍ଦ୍ରସ୍ବରଙ୍କୁ ପାଠ ପଢ଼େଇ ଦେଇଚି ।

ତନ୍ମୟ—ଆରେ ବାବା, ଏଇଟା ତ କୋର୍ଟ କଚେରୀ ନୁହେଁ, ଏଇଟା ମୋ ଘର ।

ରଣଜିତ୍—ସେଇଆ ତ ମୁଁ କହୁଚି । ତାର କଣ ଦରକାର ଥିଲା ଏଠି tresspass କରିବା ।

( ଠିକ୍ କୋର୍ଟରେ ଠିଆହୋଇ ଓକିଲଙ୍କ ଭଳି କହିବାକୁ ଆରମ୍ଭ କରିଦେଲା )

ମି: ଲର୍ଡ ! Here is my client, an innocent youngman of a respectable family having very bright career. ତା'ର ସେ ଝିଅ ସାଙ୍ଗରେ କିଛି ସମ୍ପର୍କ ନାହିଁ କି ନ ଥିଲା । ସେ tresspass କରିଛି । ସେ ଅନଧିକାର ଚର୍ଚ୍ଚା କରିଛି
ମି: ଲର୍ଡ, It is fraud, I pray justice.

ତନ୍ମୟ—ତୁ ଯାହା ଆରମ୍ଭ କଲୁଣି, ମୋର ଆଉ କୋର୍ଟକୁ ଯିବା ଦରକାର ନାହିଁ; ଏଇଠି ମତେ ବେଇଜତ୍ କରି ଛାଡ଼ିବୁ ।

ରଣଜିତ୍—ତୁ ଡରୁଚୁ ? କାହାକୁ ଡରୁଚ ? ସେ ଝିଅଟାକୁ ?

ତନ୍ମୟ—ନା ଭାଇ, ସାଇପଡ଼ିଶାଙ୍କୁ ।

ରଣଜିତ୍—ଆରେ ସାଇପଡ଼ିଶା ତୋର କ'ଣ କରିବେ ! ଆଇନ୍ କହୁଚି, ସେମାନଙ୍କର ବି ତୋର ଘର ଭିତରେ କିଛି ଅଧିକାର ନାହିଁ । ଯଦି କିଛି କରନ୍ତି, ସମସ୍ତଙ୍କୁ ମୁଁ କୋର୍ଟକୁ ଟାଣିବି । ଘଣ୍ଟା ଘଣ୍ଟା ଧରି cross examine କରିବି । କ'ଣ ଭାବିଚନ୍ତି ସେମାନେ ? ମୁହଁ କଳାକାଠ ପଡ଼ିଯିବ, ଜାଣିଚୁ !

ତନ୍ମୟ—ତୋ ଗୋଡ଼ତଳେ ପଡ଼ୁଚି, ଟିକେ ପାଟି ବନ୍ଦ କର ।

ରଣଜିତ୍—ହଁ, କ'ଣ କହୁଚୁ କହ, ତୋର ଆଉ କିଛି ପଏଣ୍ଟ ଅଛି ?

ତନ୍ମୟ—ଅଛି ।

ରଣଜିତ୍—କ'ଣ କହ । ( ପକେଟରୁ କଲମ ଓ ନୋଟଖାତା କାଢ଼ି ଟିପିବାକୁ ଆରମ୍ଭ କଲା )

ତନ୍ମୟ—ପଏଣ୍ଟ ହେଲା, ତୋର ଏଇ କଳା କୋଟ୍ ଆଉ ଧଳା 'ଟାଇ'ଟା ବର୍ତ୍ତମାନ ଏଇଠି ଖୋଲି ପକେଇବାକୁ ପଡ଼ିବ ।

ରଣଜିତ୍—କାହିଁକି ? ସେଟା ମୋର uniform.

ଚନ୍ଦ୍ରସ୍ୱ—ହଁ, ଏଇଟା ଯିଏଥିଲ୍ଲଯାଏ ତୁ ଏମିତ ବକୁଥିବୁ, ଆଉ ତୋ ପାଟି ଶୁଣି ନିଏଅଟା କିଛୁ କହିବନ।

ରଣଜିତ୍—କହିବନ ? ଅଲବତ୍ କହିବ।

ଚନ୍ଦ୍ରସ୍ୱ—ଆଚ୍ଛା, ତୁ ତା'କୁ କହିବାକୁ ଦେଲେ ତ!

ରଣଜିତ୍—ମୁଁ କ'ଣ କୋର୍ଟରେ ଜାହାଳକ କୁନ୍ଥେଇଦଏଁ ? I make them dumb.

ଚନ୍ଦ୍ରସ୍ୱ—କୋର୍ଟରେ ଯାହା କରିବାର କରିବୁ। ଏଠି ଆଗେ କ'ଣ କହୁଚ ସେ ନିଏଅଟା, ଆଗେ ଟିକେ ଶୁଣ୍।

ରଣଜିତ୍—ଠିକ୍ କହିଚ୍, ତା ପଏଣ୍ଟଟା ଶୁଣିବା ଦରକାର। ତା ହେଲେ ତୋ ପାଇଁ defence argumentଟା better ହବ।

ଚନ୍ଦ୍ରସ୍ୱ—ମୁଁ ତ ସେଇଆ କହୁଚ। ଓକିଲ ବୋଲି ପରିଚୟ ନ ଦେଇ ତାକୁ ଡାକ ମୋର ବନ୍ଧୁ ବୋଲି ପରିଚୟ ଦେଇ କଥାଟା···

ରଣଜିତ୍—ତା'ହେଲେ କୋଟ ଆଉ 'ଟାଇ'ଟା ନିହାତ ଖୋଲିବା ଦରକାର, ନା ? ( ନିଜର କୋଟ ଓ ଟାଇ ଖୋଲି ଚନ୍ଦ୍ରସ୍ୱ ହାତକୁ ଦେଇଦେଲ ) ନେ, ଧ···।

[ କିଛି ସମୟ ପରେ ବାହାରୁ 'ସାଧୁଆ' 'ସାଧୁଆ' ଡାକ ଭିତରେ ପ୍ରବେଶ କରିଛି ଚଟିକା। ମଥାରେ ସିନ୍ଦୁର, ଚନ୍ଦନ, ବାହୁରେ ସାବିତ୍ରୀବ୍ରତ ବନ୍ଧା ହୋଇଛି, ହାତରେ ଷ୍ଟେଗଥାଲି, ତା ଉପରେ ଧୂପ ଓ ଦୀପ ]

ଚନ୍ଦ୍ରସ୍ୱ—( ରଣଜିତ୍ କାନରେ ) ହେଇଟି, ସିଏ ଆସୁଚ। Be gentle.

[ ଚଟିକା ପ୍ରବେଶ କରି ଏମାନଙ୍କୁ ଦେଖି ଗୋଟିଏ ହାତରେ ଓଢ଼ଣା ଟାଣିଦେଇଚ ]

ଚନ୍ଦ୍ରସ୍ୱ—ଏ ମୋର ବନ୍ଧୁ ରଣଜିତ୍; ତୁମକୁ ଦେଖା କରିବାକୁ ଆସିଚ। ଆଜି ଓଢ଼ଣା ଦେଲେ ଚଳିବନ।

ରଣଜିତ୍—ନମସ୍କାର, ଚଟିକା ଦେବୀ!

ଚଟିକା—(ଚନ୍ଦ୍ରସ୍ୱ ଆଡ଼କୁ ଚାହିଁ) ତମ ବନ୍ଧୁଙ୍କୁ କହିଦିଅ—ଆଜି ତାଙ୍କ ନମସ୍କାରର

ପ୍ରତିନମସ୍କାର ମୁଁ ଜଣାଇପାରୁନ । ଆଜ ଦିନରେ ମୁଁ ତୁମ ଛଡ଼ା ଆଉ କାହାକୁ ନମସ୍କାର କରିପାରିବନି ।

[ ଚନ୍ଦ୍ରିମା ଡାଇନିଂରୁ ଶୋଇବାଘରକୁ ଚାଲିଯାଇଛି ଓ ସେଠୁ 'ସାଧିଆ' 'ସାଧିଆ' ଡାକି ସ୍ନେଷେଇଘରକୁ ଚାଲିଯାଇଛି । ରଣଜିତ୍ ଚନ୍ଦ୍ରପ୍ସ ମୁହଁକୁ ଚାହିଁ ମୂକ ହୋଇ ରହିଯାଇଛି ]

ଚନ୍ଦ୍ରପ୍ସ—କରେ, କ'ଣ ସବୁ ଖାଇ ରହିଗଲୁ ନା କଣ ?

ରଣଜିତ୍—Seriously କହୁଚ, ଯାହା ଶୁଣିଲି, ଏସବୁ point ତ ତୋ ସପକ୍ଷରେ ଯାଉନି ।

ଚନ୍ଦ୍ରପ୍ସ—ସବୁ ମିଛ, ଅଭିନୟ । ଏତକ କ'ଣ ଶୁଣୁଚୁ । ଆହୁରି ଶୁଣିବୁ ।

ରଣଜିତ୍—ଅଭିନୟ ! ( ମୁଣ୍ଡ ହଲେଇ କହିଲା ) ନା, ମୋର କାହିଁ ସେମିତି ବିଶ୍ୱାସ ହଉନି ।

ଚନ୍ଦ୍ରପ୍ସ—କଏ ଆଉ ବିଶ୍ୱାସ କରୁଚ ଯେ, ତୁ ବିଶ୍ୱାସ କରିବୁ । କାହାକୁ ମୁଁ କେତେ ବୁଝେଇବି ? ମୋ ମୁଣ୍ଡ ଗୋଳମାଳ ହେଇଗଲାଣି ।

( ଚନ୍ଦ୍ରପ୍ସ ମୁଣ୍ଡରେ ହାତ ଦେଇ ତଳେ ବସିଗଲା)

ରଣଜିତ୍—ମନେହଉଚ, ମୋ ମୁଣ୍ଡଟା ବି ଗୋଳମାଳ ହେଇଯାଉଚ ।

[ ସାଧିଆ ଭୋଗଥାଳି ଧରି ସ୍ନେଷେଇଘରୁ ଶୋଇବାଘର ଓ ତା'ପରେ ବୈଠକଖାନାକୁ ଆସିଛି ]

ସାଧିଆ—( ରଣଜିତଙ୍କୁ ଭୋଗଥାଳି ବଢ଼େଇଛି ) ମା ଦେଇଛନ୍ତି, ସାବିତ୍ରୀଭୋଗ ଖାଆନ୍ତୁ ।

ରଣଜିତ୍—( ଯନ୍ତ୍ରଚାଳିତ ଭଳି ଭୋଗଥାଳିରୁ ଭୋଗ ଟିକେ ନେଇ ପାଟିରେ ପକେଇଦେଲା । ତା'ପରେ ସାଧିଆ ଧରିଥିବା ପାଣି ଗ୍ଲାସରେ ହାତ ବୁଡ଼ାଇ, ଧୋଇ ପୋଛି ସାଧିଆକୁ କହିଲା ) ମା'ଙ୍କୁ କହିଦେ, ମୁଁ ଭୋଗ ପାଇଚ ।

(ସାଧିଆ ଭିତରକୁ ଚାଲିଯାଇଚ । ରଣଜିତ୍ ଚାଲିଯାଉଥିଲା ବାହାରକୁ)

ଚନ୍ଦ୍ରପ୍ସ—କରେ, ତୁ କ'ଣ ଚାଲିଯାଉଚୁ ?

ରଣଜିତ୍—(Seriousy) ହଁ, ମୁଁ ଯାଉଚ, କାରଣ ମୋର ଗୁଲିଯିବା ଉଚିତ ।

ଚିନ୍ମୟ—( ଜୋରରେ ) ରଣଜିତ୍ ! !

ରଣଜିତ୍—ତୁ ମୋର ବନ୍ଧୁ ହୋଇପାରୁ, ତା ବୋଲି ମିଛ କେସ୍‌ରେ ମୁଁ ତୋ ପାଇଁ ଠିଆ ହୋଇ ପାରିବିନି ।

ଚିନ୍ମୟ—ମିଛ ?

ରଣଜିତ୍—ହଁ, ତୁ ଯାହା କହୁଚୁ, ସବୁ ମିଛ । Clear case of concoction.

ଚିନ୍ମୟ—କ'ଣ କହୁଲୁ ! !

ରଣଜିତ୍—ହଁ, ମୋର ବିଶ୍ୱାସ, ଛବିମା ସହିତ ତୋର ବିବାହ ହୋଇଚି । ହୋଇପାରେ ସେଠା ଦେଖା ଉପରେ, କୋର୍ଟରେ କିମ୍ବା କେଉଁଠି ନଦୀଗଳରେ କେଉଁ ମନ୍ଦିରରେ ପରସ୍ପର ମାଳବଦଳ କରି ।

ଚିନ୍ମୟ—ତୁ ଶେଷରେ ଏଇଆ ଭାବିଲୁ ?

ରଣଜିତ୍—ଏମିତି ଗୋଟିଏ ସରଳା ଝିଅର ଜୀବନକୁ ନେଇ ଜୁଆଖେଳ ଖେଳନା, ଚିନ୍ମୟ ! ଯାହା ହବାର ହୋଇଯାଇଚି । ତୋ କଥାରେ ପଡ଼ି ମୁଁ ତା ମଥାର ସିନ୍ଦୂରକୁ ଅସ୍ୱୀକାର କରିପାରିବିନି ।

ଚିନ୍ମୟ—ରଣଜିତ୍ ! !

ରଣଜିତ୍—ଆଜିପର୍ଯ୍ୟନ୍ତ ମୁଁ ମିଛ case ନେଇ କୋର୍ଟରେ କେବେ ଲଢ଼ିନି । ସେଇଥିପାଇଁ ମୋ ନାଁ 'ମହାବଳ ବାଘ' । ଏଇ case ପାଇଁ ଯଦି ମତେ court ରେ ଠିଆ ହେବାକୁ ପଡ଼େ, ତେବେ ମୁଁ ଛିଡ଼ା ହେବି ଛବିମା ପାଇଁ, ତୋ ପାଇଁ ନୁହେଁ ।

( ଚିନ୍ମୟ ହାତରୁ ଗାଉନ, କୋଟ, ଟାଇ ଛଡ଼ାଇ ନେଇ ଗୁଲିଗଲେ )

ଚିନ୍ମୟ—ରଣଜିତ୍, ରଣଜିତ୍······।

( ବିକଳ ହୋଇ ଠିଆ ହୋଇଗଲା । ସାଧୁଆ ଭିତରୁ ଆସିଚି )

ସାଧୁଆ—ବାବୁ ! ମା ଡାକୁଚନ୍ତି ।

ଚିନ୍ମୟ—( ବିରକ୍ତିରେ ) କ'ଣ ପାଇଁ ଡାକୁଚନ୍ତି ?

ସାଧୁଆ—ମୁଁ କେମିତି ଜାଣିବି ?

ଚିନ୍ମୟ—( ରାଗରେ ) କହିଦେ, ମୁଁ ଯାଇପାରିବିନି ।

[ ସାଧୁଆ ତରି ତରି ଭିତରକୁ ଚାଲିଗଲା । କିଛି ସମୟ ପରେ ତଟିନୀ ଭିତରୁ ଆସିଛି । ହାତରେ ତା'ର ଦୀପ, ଫୁଲ ଓ ଅନ୍ୟାନ୍ୟ ଜିନିଷ ଥିବା ଥାଳି । ସେ ଧୀରେ ଧୀରେ ଆସି ତନ୍ମୟ ପାଖରେ ଛିଡ଼ା ହୋଇଛି । ତନ୍ମୟ ମୁହଁକୁ ଚାହିଁଛି । ତନ୍ମୟ ଘୃଣାରେ ମୁହଁ ଗୋଟିଏ ଆଡ଼କୁ ବୁଲେଇଦେଇଛି ]

ତଟିନୀ—( ଲୁହ ଛଳଛଳ ଆଖିରେ ) ମୁଁ ଜାଣେ ତମେ ମୋ ପାଇଁ ପଥର; ହେଲେ ଆଜି ସିମିତ ପଥରର ଦିଅ ହେଇ ତମେ ମୋର ଏ ପୂଜା ଗ୍ରହଣ କର ।

[ ଦୀପଥିବା ଥାଳିରେ ବନ୍ଦେଇଚି ତନ୍ମୟକୁ । ତା ଆଖିରୁ ଲୁହ ବହିଯାଉଛି ]

ତନ୍ମୟ—( ବିରକ୍ତିରେ ) ଏସବୁ କଣ ହଉଚି ?

ତଟିନୀ—ଆଜି ସାବିତ୍ରୀ ଅମାବାସ୍ୟା । ଆଉ କିଛି ନ ହେଲେ ବି ତମ ପାଦ ଛୁଇଁବାର ଅଧିକାର ତ ମୋର ଅଛି !

( ଥାଳି ତଳେ ରଖି ତନ୍ମୟର ପାଦ ଛୁଇଁବାକୁ ଗଲବେଳେ )

ନନ୍ମୟ—ନା, ତା, ମୁଁ କରିବାକୁ ଦେବନି ।

[ ପ୍ରବେଶ କରିଛି ତନ୍ମୟର ଭଉଣୀ ମାଧୁରିକା । ସୁନ୍ଦରୀ, ଶିକ୍ଷିତା, ଚଞ୍ଚଳା, ବିବାହିତା; କିନ୍ତୁ ବିବାହର କୌଣସି ଚିହ୍ନ ତା' ମୁଣ୍ଡରେ କି ହାତରେ ନାହିଁ ]

ମାଧୁରିକା—କାହିଁ ଦେବନି ? ଇଂରାଜୀ ପାଠ ପଢ଼ିଚି ବୋଲି ଓଡ଼ିଆଘରର ପୂଜା, ପାଠ, ଉପାସ ସବୁ ତୁମପାଇଁ କୁସଂସ୍କାର ହେଇଗଲା, ନା ! ସହଜ ! ମୁଁ ଏଇଠି ଠିଆ ହେଇଚି, ତମେ କାଙ୍କୁ ବନ୍ଦେଇଲ । ଦେଖେଁ ସେ କୁଆଡ଼େ ଯାଉଚନ୍ତି ।

[ ଚଟିନୀ ଚନ୍ଦ୍ରସ୍ନୁକୁ ବନ୍ଦେଇଛି । ଚନ୍ଦ୍ରସ୍ନୁ ହଠାତ୍ ନୀହାରିକାର ଉପସ୍ଥିତିରେ ଚଟିନୀ ପ୍ରତି ଲକ୍ଷ୍ୟ ରଖିପାରନ୍ତି ]

ଚନ୍ଦ୍ରସ୍ନୁ—ଧିକ୍ ! ତୁ…

ନୀହାରିକା—ଖାଲି ମୁଁ ନୁହେଁ, ବାପା ବି ଆସିଚନ୍ତି ।

ଚନ୍ଦ୍ରସ୍ନୁ—( ବିବ୍ରତ ହୋଇ ) ଏଁ, ବାପା ! ( କାବା ହୋଇ ରହିଯାଇଛୁ )

ନୀହାରିକା—ତମେ କିନ୍ତୁ ଖବର ଦେଲନି, ହେଲେ ଆମେ ସବୁ ଜାଣିଥାଉଚୁ ।
ବାପା ତ ତମ ଉପରେ…ରୁଦ୍ର, ଆସୁଚନ୍ତି ଯେ…

ଚନ୍ଦ୍ରସ୍ନୁ—(ଭୟରେ) ବାପା ! ବାପା ଏଠିକି ଆସୁଚନ୍ତି ? (ଭିତରକୁ ପଳେଇଚି)

ନୀହାରିକା—ଆରେ, ପଳେଇଯାଉଚ କଣ ? ଶୁଣ, ଶୁଣ ! ବାପାଙ୍କୁ ଟିକେ ମୁହଁ ଦେଖାଅ । ଦେଖୁଚ, ଦେଖୁଚ ଭାଉଜ ! ତମ ଉପରେ ଏଇକ୍ଷଣି ଚୋଟ ଦେଖାଉଥିଲେଟି ! ହଉ, ଆଲଟା ମତେ ହଉ । ମୁଁ ତୁମକୁ ଟିକେ ବନ୍ଦେଇଦିଏଁ । ( ବନ୍ଦେଇଚି )

ଚଟିନୀ—ଛି, ତମେ ମତେ ବନ୍ଦେଇବ କ'ଣ ? ତମେ ପରା ମୋର…

ନୀହାରିକା—ମିଠା କଥାରେ ଭାଇଙ୍କି କିନ୍ତୁ ଭୁଲେଇଦେଲ, ହେଲେ ମତେ ଭୁଲେଇପାରିବନି । ନନ୍ଦେଇପ୍ରକୁଳ କାହିଁ ?

ଚଟିନୀ—ନନ୍ଦେଇପ୍ରକୁଳ କାହିଁକି ? ତମର ଯାହା ମନ ହଉଚି, ନିଅ ।

ନୀହାରିକା—ମୋର କିଛି ଦରକାର ନାହିଁ । ଖାଲି ତୁମର ସ୍ନେହ ··ମୋର ସେତିକି ହେଲେ ଚଳିବ !

[ ନୀହାରିକା କହୁ କହୁ ଚଟିନୀ କୁଣ୍ଢାଇ ପକାଇଲା । ଦୁହେଁ ଧରାଧରି ହୋଇ ଶୋଇବା-ଘରକୁ ଚାଲିଗଲେ । ପ୍ରବେଶ କଲେ ଚନ୍ଦ୍ରସ୍ନୁର ବାପା ପାଇକରାୟ । ସମ୍ଭ୍ରାନ୍ତ, ବୟସ୍କ । ଅଭି-ଜାତ୍ୟର ଚିହ୍ନ ତାଙ୍କର ସାଦା ପୋଷାକରେ ପରିସ୍ଫୁଟ । ପାଟି କରି କରି ପ୍ରବେଶ କଲେ । ଆସିଚନ୍ତି ଖୁବ୍ ରାଗ ଓ ଅଭିମାନରେ ]

ପାଇକରାୟ—( ଜୋରରେ ) ସାଧୁଆ…ସାଧୁଆ…କରେ, କ'ଣ ଗୋଟାଏ ଡାକରେ ଆଜିକାଲି ଶୁଭୁନାହିଁ ?

ସାଧୁଅ—( ଦଉଡ଼ିଆସି ) ଅଜ୍ଞା ! ( ଗୋଡ଼ଧରି ନମସ୍କାର ହେଲ )

ପାଇକସସ୍ୱ—( ସାଧୁଆର ମୁଣ୍ଡବାଳକୁ ଧରିପକାଇ ଉଚ୍ଚସ୍ୱରରେ ) ତୁ ଗୋଟାଏ ବଦ୍‌ମାସ୍ ।

ସାଧୁଅ—( ଗୁନଅରେ ସବସ୍ତ୍ରଲଜଡବନ୍ତୁ ) ଅଜ୍ଞା !

ପାଇକସସ୍ୱ—ହେଠା ।

ସାଧୁଅ—ଅଜ୍ଞା !

ପାଇକସସ୍ୱ—ହେଉ ।

ସାଧୁଅ—ଅଜ୍ଞା ।

ପାଇକସସ୍ୱ—ତତେ ମୁଁ ଖୁନ୍ କରିବ ।

ସାଧୁଅ—( କନ୍ଦଳରେ ) ଅଜ୍ଞା, ମୋର କ ଦୋଷ ?

ପାଇକସସ୍ୱ—(ତା ମୁଣ୍ଡବାଳ ଘୁଞ୍ଚଦେଇ ସ୍ୱରରେ) ଖବର ଦେଲୁନାହିଁ କାହିଁକ ? ସବୁ ନମକ୍‌ହାରମ୍ । ଠିଆହେଲୁ କ'ଣ ? ଯା, ବାହାରେ ଜନପଥପଟ ଅଛୁ ।

[ ସାଧୁଅ ନଉକ ହୋଇ ଚ୍ଲିଗଲ । ନୀହାରିକା ଓ ତଟିନୀ ପ୍ରବେଶ କରନ୍ତ । ତଟିନୀ ମୁଣ୍ଡରେ ଓଢ଼ଣା ]

ନୀହାରିକା—ବାପା ! ସ୍ୱଉଜ ତୁମକୁ ଜୁହାର୍ କରୁଚନ୍ତ ।

ପାଇକସସ୍ୱ—( ଟିକେ ଅନେଇଦେଇ ମୁହଁ ଫେରେଇଆଣି ) ମୋ ମା ଲକ୍ଷ୍ମୀ । ସିଏ ଆସିଲ, ମୋ ଘର ପୂରିଉଠିଚ ।

[ ନୀହାରିକା ଜୋର କରି ତଟିନୀ ମୁଣ୍ଡରୁ ଓଢ଼ଣା ଖୋଲିବାକୁ ଚେଷ୍ଟା କରନ୍ତୁ ]

ନୀହାରିକା—ବାପା, ଦେଖ ମୋ ସ୍ୱଉଜ କେତେ ସୁନ୍ଦର ! ସତେ ଯେମିତ ପରୀ ।

ପାଇକସସ୍ୱ—ଆଲେ ମା, ସିଏ କ'ଣ ଆଉ କାଣୀକୁଣ୍ଟାଟିଏ ହେଇଥାନ୍ତା ! ମୁଁ ଠିକ୍ ଜାଣିଚ, ମୋ ମା ପରୀଟିଏ ହେଇଥିବ । ହେଲେ ଏଇଟା ହେଲ, ଯାହ କୁ କହନ୍ତ, ମାଙ୍କଡ଼ ବେକରେ ମୋତିମାଳା । ଟିକେ ଭଲକର ବୁଝ, ତୋ ସାଇ ତାକୁ ଭଲରେ ରଖିବ କ ନାହିଁ ।

ନୀହାରିକା—ବୁଝିବାକୁ ଆଉ କେଳ କାହିଁ ? ସଇ ଯେମିତ ତୁମ ଆସିଚା କଥା ଶୁଣିଚନ୍ତ, ସିଧା ଯାଇଁ ବାରପଟେ ।

ପାଇକରାୟ—ବାରପଟେ କ'ଣ କରୁଚ ? ତାକୁ କହ, ଏଠିକି ଆସୁ ।

ନୀହାରିକା—ହଁ, ତାଙ୍କର ଏଠିକି ଆସିବା ନିହାତି ଦରକାର । ହେଲେ ମିତ୍ରଚନ୍ଦ୍ରକ ନାହିଁ ଦେଖେଁ, ଖୋଜେଁ ।

[ଖୁଡ଼ୀଙ୍କୁ ନେଇ ଭିତରକୁ ଚାଲିଗଲା । ବାହାରୁ ସୁଟ୍‌କେସ୍ ପ୍ରଭୃତି ନେଇ ସାଧୁଆ ଅସିଚି । ପାଇକରାୟଙ୍କ ପାଖଦେଇ ଭିତରକୁ ଗଲା । ଭିତରୁ ଚନ୍ଦ୍ରାୟ ଡରି ଡରି ଆସି ବାପାଙ୍କୁ ମୁଣ୍ଡିଆ ମାରି ପଛପଟେ ଠିଆହେଲା ]

ପାଇକରାୟ—କ'ଣ ? ମୁହଁ ଦେଖେଇବାକୁ ଡର ଲାଗୁଚି ? ଏତେ ଯଦି ଡର, ତା'ହେଲେ ଏ ସବୁ କାଣ୍ଡ କରୁଥିଲ କାହିଁକି ?

ଚନ୍ଦ୍ରାୟ—ଆପଣ କିଛି ନ ବୁଝି···

ପାଇକରାୟ—(ରାଗରେ) ଚୁପ୍‌କର ! କେତେଦିନ ହେଲା କହୁଚି, ପଢ଼ାପଢ଼ି ବନ୍ଦ କରି ଗାଁକୁ ଚାଲ । B. A. ତ ପାସ୍‌କଲ, ଆଉ କଣ ଦରକାର ? ଯେତେକ ଜମିବାଡ଼ି ଅଛି ସେତକ ଦେଖାଶୁଣା କର । ମୋ କଥା କାନକୁ ନେଲନି, ବାହାଘର କଥା ଉଠେଇଲି, ଶୁଣିଲନି । ମୁଁ ଜାଣିଥିଲି, ମୁଁ ଠିକ୍ ଜାଣିଥିଲି ଏମିତି ଗୋଟାଏ କିଛି ହବ । କୁଳାଙ୍ଗାର ତ ଜନମ ହେଇଚ ଯେତେବେଳେ, ବଂଶରେ କାଳି ନ ଲଗାଇ ଛାଡ଼ିବନି ।

ଚନ୍ଦ୍ରାୟ – ଆପଣ ମୋ କଥାଟା ଆଗେ ଶୁଣି ସାରନ୍ତୁ···

ପାଇକରାୟ—କ'ଣ ଶୁଣିବି ? କ'ଣ ଆଉ ଶୁଣିବି ? ( ହଠାତ୍ ତାଙ୍କର କଣ୍ଠ କରୁଣ ହେଇଉଠିଲା ) ଏଇଆ ଯଦି ତୋ ମନରେ ଥିଲା, ତା'ହେଲେ ମୋତେ କହିଲୁନି କାହିଁକି ? କେତେ ଜାଗାରେ କଥା ପଡ଼ିଚି, କେତେ ଘରୁ ଜାତକ ଆସିଚି । ତୋ ବୋଉ ତ ନାହିଁ, ମୁଁ ଏକା ଲୋକ । କାହିଁରେ କ'ଣ ହଇଯାଏ । କାହିଁକି ମୁଁ ମିଛରେ ଏତେ ଘାଣ୍ଟି ହେଲି ? ତୁ ମୋ ପାଖକୁ ଗୋଟେ ଚିଠି ଦେଇପାରିଲୁନି ? ସାଧୁଆକୁ ଟିକେ ଗାଁ'କୁ ପଠେଇପାରିଲୁନି ? ନା, ଆମେ ସବୁ ଚୋର କିଏ ?

( ଆଖି ଛଳଛଳ ହୋଇଉଠିଛି, କଣ୍ଠ ରୁଦ୍ଧ ହୋଇଯାଇଛି )

ଚନ୍ଦ୍ରାୟ—ବାପା ! ! !

ପ'ଇକରାୟ—(ବାଷ୍ପରୁଦ୍ଧ କଣ୍ଠରେ) ତୁ ବୁଝିବୁ ନାହିଁରେ, ତୁ କିଛି ବୁଝିବୁ ନାହିଁ । ତୋ ବୋଉ ଯେତେବେଳେ ଚାଲିଗଲା, ମୋତେ ସେତେବେଳେ 'ଚଉଦପରଣ' । ଲୋକେ କହିଲେ, ଆଉ ଥରେ ସଂସାର କର । କେଡ଼େ କେତେ ଜାଗାରୁ ପ୍ରସ୍ତାବ ଆସିଲା । ହେଲେ ତୋର ମୁହଁକୁ ଚାହିଁ ମୁଁ ସବୁ ଭୁଲିଗଲି । ଯିଏ ପଚାରିଲା, ତାକୁ ଜବାବ ଦେଲି, ତନୁବୋଉ ମତେ ଠକିଦେଇ ଯାଇନି । ମୋ ହାତରେ ଦେଇଯାଇଚି ଯାହାକୁ, ସେଇ ମୋର ମୋତିମାଣିକ ।

ତନୁ—ବାପା !!

ପାଇକରାୟ କେତେ ଆଶା କରିଥିଲି, ତୋ ବାହାଘର କରିବି; ବାଣ, ରୋଶଣି, ବାଜା, ଝାଂଜ—ଲୋକେ କହିବେ 'ଇମିତି ଅଡ଼ମ୍ବର କାହାର ହୋଇ ନ ଥିଲା' । ହେଲେ ତୁ ମତେ···

ନୀହାରିକା—( ପଛପଟୁ ଆସି ) ବାପା, କାହିଁ ଇମିତି ଆଉ ପାଟି କରୁଚ, କହିଲ ? ବାହାଘର କରିବା କଥା କର । ବେଦୀ, ବାଣ, ରୋଶଣି, ଝାଡ଼ ସବୁ ବ୍ୟବସ୍ଥା କର । ତମ ମନ ବୋଧ ହେଉ । ଗାଁ ଲୋକେ ବି ଦେଖନ୍ତୁ । ସହଜ ଗାଁକୁ ଚାଲିବେଳକୁ ଇମିତି ଗୋଟେ ପ୍ରୋସେସନ କରିବ ଯେ କେହି ଯେମିତି ଦେଖି ନ ଥିବେ ।

ପାଇକରାୟ—ହଁ, ହଁ ମୁଁ ସେଇଆ କରିବି—ମୁଁ ସେଇଆ କରିବି । 'ତନୁବୋଉ' ସ୍ୱର୍ଗରେ ଥାଇ ଦେଖିବ, ତା ପୁଅ ବୋହୂ ଗାଁକୁ ଫେରି ଆସିଛନ୍ତି ।

ନୀହାରିକା—ହଉ, ଭାଇଙ୍କ ଦୋଷ ଆଗେ କ୍ଷମା ଦେଲ ?

ପାଇକରାୟ—କିଏ ତାକୁ ଦୋଷ ଦଉଚି ? ମୁଁ ଖାଲି କହୁଚି, ସାରା ମୁଲକରେ ଯାହା ବାପର ଏଡ଼େ ବଡ଼ ନାଁ ଡାକ, ତା ବାହାଘରଟା କଣ ଏମିତି ହବା କଥା !

ସାଧୁଆ—( ସର୍ବତ ନେଇ ଭିତରୁ ଆସିଛି ) ଆଜ୍ଞା ! ଯା' କହିଲେ, ପଦେ କଥା ।

ପାଇକରାୟ—ହାରାମଜାଦା ! ଚୁପ୍ ଚୁପ୍, ହାରାମଜାଦା ! ତତେ କିଏ କଥା କହିବାକୁ କହୁଚି ?

ସାଧୁଆ—ଆଜ୍ଞା, ମା ଦେଇଚନ୍ତି···( ବଢ଼େଇଦେଲା ସର୍ବତ ଗ୍ଲାସ )

ପାଇକରାୟ—ହୁଁ । (ହାତରୁ ନେଇଗଲେ ଗ୍ଲାସ )

—ଅନ୍ଧାର—

## ଚତୁର୍ଥ ଦୃଶ୍ୟ

[ ଗୁଜର ସାଧୁଆ ସୁଟକେସ୍ ସଜାଉଥାଏ । ଚଟିନୀ ଶୋଇବାଘରେ ବସି ପାନ ଭାଙ୍ଗୁଥାଏ । ନୀହାରିକା ତାହାକୁ ଆସି କହିଲା— ]

ନୀହାରିକା—ଭଉଜ ! ନଅଟା ବାଜିଗଲା ।

ଚଟିନୀ—ବାଜୁ ।

ନୀହାରିକା—ବାପା ଫେରିଲେ ଆସି ପାଟି କରିବେ ।

ଚଟିନୀ—( ହସି ହସି ) ପାଟି କରନ୍ତୁ ।

ନୀହାରିକା—କଣ, ଜାଣି ଜାଣି ଡେରି କରୁଚ !

ଚଟିନୀ—ହଁ, ଜାଣି ଜାଣି ।

ନୀହାରିକା—ଗାଡ଼ି ଫେଲ୍ ହେଲେ···

ଚଟିନୀ—ଆଉ ଗୋଟାଏ ଦିନ ଏଇଠି ରହିଯିବେ !

ନୀହାରିକା—କେତେ ଦିନ ଆଉ ରହିବେ ?

ଚଟିନୀ—ତାଙ୍କ ମନ ଯେତେଦିନ ।

ନୀହାରିକା—ସେବାଯତ୍ନରେ ତୁମେ ତାଙ୍କୁ ପୂରା ବାନ୍ଧିଦେଲଣି ।

ଚଟିନୀ—ନା, ସବୁବେଳେ ତ ଯିବେ ଯିବେ କହୁଚନ୍ତି ।

ନୀହାରିକା—ସେମିତି କହୁଚନ୍ତି, ହେଲେ ଯିବାକୁ ମୋଟେ ମନ ନାହିଁ ।

ଚଟିନୀ—ମିଛ ।

ନୀହାରିକା—ତମକୁ ମୋ ରାଣ ଭଉଜ, ତମେ କିନ୍ତୁ ତାଙ୍କୁ ଆଉ ଅଟକାଇ ରଖନେଇଁ ।

ଲତିକା—କାହିଁକି ?

ମାହାରକା—ତେଣେ ଅନେକ କାମ ।

ଲତିକା—କି କାମ ?

ମାହାରକା—ବାଜା, ରୋଶଣି, ବାଣ, ପ୍ରୋସେସନ ( ଚୁଃ ) ତମେ ସେସବୁ ବୁଝିପାରିବନି ।

ଲତିକା—କଣ କହୁଥିଲ, ବୁହନା !

ମାହାରକା—ତମେ ତ ଫେରେ ଗାଁକୁ ଯିବ, ନା, ଏଇଠି ବସିଥିବ ? ସିଆଡେ଼ ପଣ୍ଡ କେତେ ଲୋକ ତୁମକୁ ସୁନ୍ଧୁଛନ୍ତି । ବାପା ନ ଗଲେ ସେ ସବୁ ଯୋଗାଡ଼ କରିବ କିଏ ?

[ ସାଧୁଆ ବୈଠକଖାନାରୁ ସୁଟକେସ୍ ବେଡ଼ିଂ ଧରାଇ ସାରି ଶୋଇବାଘରେ ପ୍ରବେଶ କଲା ]

ସାଧୁଆ—ମୋ କାମ ଛୁଟିଗଲା, ମାଁ ! ସୁଟକେସ୍ ଆଉ ବେଡ଼ିଂ ସବୁ ରେଡ଼ି । ମୋତେ ଆଉ ଦୋଷ ଦବନେଇଁ ।

ଲତିକା—ତୋତେ କିଏ ଦୋଷ ଦେଉଚି କି ?

ସାଧୁଆ—କିଏ ଆଉ ? ଏଇ ଦେଇ···ବୁଢ଼ା ବାବୁଙ୍କ ପାଖରେ ମୋ ନାଁରେ ଚୁଗୁଲି କରି ଦୁଇଦିନ ଭିତରେ ମତେ ତିଇଣ ଥର ଗାଳି ଖୁଆଇଲେଣି ।

ନୀହାରକା—କଣ ତୁ ସ୍ୱରୁଚୁ ବାପା ଗୁଳିଚଲେ ଗାଳିଦବାକୁ ଲତେ ଆଉ ଏ ଘରେ କେହି ନାହିଁ ? ମୁଁ ଯାଉନି, ରହୁଚି । ଗାଳି ଯେମିତି ଶୁଣୁଚ ସେମିତି ଶୁଣିବ ।

[ ବୈଠକଖାନାରେ ଧୀରାଜ ଓ ପାଇକରାୟ କଥାବାର୍ତ୍ତା ହୋଇ ପ୍ରବେଶ କରୁଥିବାର ଦେଖାଗଲା ]

ଧୀରାଜ—ଶୁଣିଲି ଏ ବିବାହରେ ଆପଣ ଖୁଆଡେ଼ ସମ୍ମତ ଦେଇଛନ୍ତି, ମଉସା !

ପାଇକରାୟ—ହଁ, ଧୀରାଜ, ଯୋଉଟା ହେଇଯାଇଚ, ସେଟା ସହଜ ଭାବରେ ଗ୍ରହଣ କରିନେବା ଭଲ ।

ଧୀରାଜ—ଆପଣଙ୍କର ଯେଉଁ ଖାନଦାନ, ଯେଉଁ ଆଭିଜାତ୍ୟ, ସେଥିରେ ମୁଁ ଆପଣଙ୍କର ମୁହଁରୁ ଏମିତି ଉତ୍ତର ଶୁଣିବି ବୋଲି ଆଶା କରି ନ ଥିଲି ।

ପାଇକରାୟ—ଦେଶ ସ୍ୱାଧୀନ ହେବାର ଆଜକୁ ଅନେକ ଦିନ ହେଲା, ଧୀରାଜ ! କାହା ବଂଶରେ କେବେ ଜଣେ ରାଜା ବା ଜମିଦାର ଥିଲା ବୋଲି ତାକୁ ନେଇ ଗର୍ବ କରିବା ଏକ ମିଛ ଅଭିମାନ ଛଡ଼ା ଆଉ କିଛି ନୁହେଁ ।

ଧୀରାଜ—କିନ୍ତୁ ସେ ଅଭିମାନର କ'ଣ କିଛି ମୂଲ୍ୟ ନାହିଁ ?

ପାଇକରାୟ—ନା, କିଛି ମୂଲ୍ୟ ନାହିଁ; ଆଜି ଦୁନିଆରେ ଯୋଗ୍ୟତାର ମାପକାଠି ବଦଳିଯାଇଛି । ମୋ ଗୁମାସ୍ତାର ପୁଅ ଆଜି ଇଞ୍ଜିନିୟର, ମୋ ଚାକରର ପୁଅ ଏମ୍. ଏସ୍‌ସି. ପାସ୍ କରି ରିସର୍ଚ୍ଚ କରୁଛି । ଏସବୁ ଦେଖିଲା ପରେ ଆଉ ସେ ମିଛ ଆଭିଜାତ୍ୟର ଦେଲୁନ୍ଟା ଫାଙ୍କି ଲାଭ କ'ଣ ?

ଧୀରାଜ—ତା ବୋଲି ତନ୍ମୟର ବାପା ହିସାବରେ ଆପଣ ତା'ର ଭବିଷ୍ୟତ କଥା ଭାବିବେନି !

ପାଇକରାୟ—ନିଜର ଭବିଷ୍ୟତ କଥା ଚିନ୍ତା କରିବାର ବୟସ ଆଉ ଦାୟିତ୍ୱ ତନ୍ମୟର ହେଇଚି । ମୋର ସେଥିପାଇଁ ମୁଣ୍ଡ ଖେଳେଇବା କ'ଣ ଦରକାର ?

ଧୀରାଜ—ନା, ଗୋଟେ ମିଛ ଖିଆଲ୍ ନେଇ ସିଏ ଆଜି ତା ଜୀବନର ସର୍ବନାଶ କରିବାକୁ ବସିଚି ।

ପାଇକରାୟ—କିନ୍ତୁ ତା' ଖିଆଲର ଖେଳନାଟିକୁ ହାତରେ ଧରି ସିଏ ଯଦି ସାରା ଜୀବନ ଆନନ୍ଦ ପାଏ ସେଥିରେ ମୋର ବାଧା ଦେବାର କିଛି ଅଧିକାର ନାହିଁ ।

ଧୀରାଜ—ତା' ବୋଲି ଆପଣ ଝିଅଟାର ପରିଚୟ ପଚାରିବେ ନାହିଁ ?

ପାଇକରାୟ—ଆଜି ଦୁନିଆରେ ମଣିଷର ପରିଚୟ ସିଏ ନିଜେ । ମୁଁ ଧରିନେଉଚି ଧୀରାଜ, ମୋ ପୁଅ ରାସ୍ତାର ଧୂଳିରୁ ଗୋଟେ ମଣିମାଣିକ ଗୋଟେଇ ଆଣିଚି । ସେଇଟା ତା ପାଇଁ ଯେତିକି ମୂଲ୍ୟବାନ୍, ମୋ ପାଇଁ ବି ଠିକ୍ ସେତିକି ମୂଲ୍ୟବାନ୍ ।

ଧୀରାଜ—(କ୍ଷୁଣ୍ଣ ମନରେ) ଆପଣ ଯେତେବେଳେ ସ୍ୱତନ୍ତ୍ର ସବୁ ସ୍ଥିର କରିଚନ୍ତି, ମୁଁ ବେଶି କିଛି କହି ଅନଧିକାର ଚର୍ଚ୍ଚା କରିବା ଭଦ୍ରାମି ହେବ ବୋଲି ଭାବୁନି ।

[ ଧୀରାଜ ଚାଲିଗଲେ । ପାଇକରାୟ ତରତର ହୋଇ ଘଣ୍ଟା ଦେଖିଲେ ]

ପାଇକରାୟ—ନଅଟା ବାଜିଗଲା । ଆରେ ସାଧୁଆ···ସାଧୁଆ !

ସାଧୁଆ—ଆଜ୍ଞା···!

ପାଇକରାୟ—ହାରାମଜାଦା ! ମୋ ସୁଟ୍‌କେସ୍, ବେଡ଼ିଙ୍ଗ···

ସାଧୁଆ—ଆଜ୍ଞା, ସବୁ ଠିକ୍ ହୋଇଯାଇଛି ।

ପାଇକରାୟ—ଯା ନେଇଆ ।

[ ନୀହାରିକା ଆସି ପହଞ୍ଚିଛି । ପାନବଟା ବଢ଼େଇ-ଦେଲା ବାପାଙ୍କ ହାତକୁ ]

ନୀହାରିକା—ଆଜି ସାହୁଙ୍କ ହାତଭଙ୍ଗା ପାନକୁ ଅନେଇ ତମେ ଗାଡ଼ି ଫେଲ୍ ହବନି !

ପାଇକରାୟ—ହଁ ମା, ଠିକ୍ କହୁଚୁ । ଦ'ଦିନ ହେଲା ମୁଁ ଗାଡ଼ି ଫେଲ୍ ହୋଇ-ଯାଉଛି । ମୋର କେବେ ଏମିତି ହୁଏନି । ଏ ବୋହୂଟା···

ନୀହାରିକା—ଆହା, ବୋହୂଟାର ଦୋଷ କାହିଁକି ଦଉଚ ? ତମର ତ ଯିବାକୁ ମୋଟେ ଇଚ୍ଛା ନାହିଁ ।

ପାଇକରାୟ—କଣ କହୁଲୁ ? ଇଚ୍ଛା ନାହିଁ ! ମାନେ, ତୁ କହୁଚୁ, ମୁଁ ଇଚ୍ଛା କରି ଏଠି ରହୁଚି । ମୋର ସିଆଡ଼େ କେତେ କାମ । ଆରେ ସାଧୁଆ, ଅନେଇଁଚୁ କଣ, ସୁଟ୍‌କେସ, ବେଡ଼ିଙ୍ଗ···

ସାଧୁଆ—ଆଣୁଚି ଆଜ୍ଞା ! ( ସାଧୁଆ ସୁଟ୍‌କେସ ବେଡ଼ିଙ୍ଗ ନେଇ ଆସିଲା ) ଆଜ୍ଞା, ସାନବାବୁ କ'ଣ କହୁଥିଲେ ଆପଣଙ୍କ ସାଙ୍ଗେ କଥା ହେବେବୋଲି ।

ପାଇକରାୟ—ସିଏ ଯାହା କହିବ ମୁଁ ଜାଣିଚି । ଚାଲ୍ ସାଧୁଆ, ଷ୍ଟେସନ ଚାଲ୍ ।

[ ସାଧୁଆ ବେଡ଼ିଙ୍ଗ୍ ସୁଟ୍‌କେସ୍ ଧରି ଆଗରେ ଚାଲିଗଲା । ପାଇକରାୟ ତା ପଛେ ପଛେ । ତଟିନୀ ଶୋଇବାଘରୁ ବୈଠକଖାନାକୁ ପଶିଲା । ଆଖିରେ ତାର ଲୁହ ]

ନୀହାରିକା—ଏ କଣ ଭାଉଜ ! ତୁମ ଆଖିରେ ଲୁହ ?

ତଟିନୀ—ବାପା ଦ' ଦିନ ପାଇଁ ଆସି ମୋତେ ଏତେ ସ୍ନେହ ମମତାରେ ବାନ୍ଧି-ଦେଇଯିବେ ବୋଲି ମୁଁ ଜାଣି ନ ଥିଲି, ନୀହାର !

ନୀହାରିକା—ତମେ କ'ଣ ତାଙ୍କୁ କମ୍ ବାନ୍ଧିଛ ! ସେ ପରା ବାଟସାରା ଖାଲି ତମରି

କାଟଦର

ତଥା ମନେ ପକଉଥିବେ । ଗଲାବେଳେ ଚନ୍ଦ୍ରକା ଗଲେ, ହସ୍ପିଟାଲ ଭିତରେ ତମକୁ ଗାଁକୁ ନେଇଯିବେ ।

( ଷ୍ଟେସନ ନିକଟରେ ଟ୍ରେନର ହୁଇସିଲ ଶୁଭିଲା )

ତଟିନୀ—ନୀହାର ! ଚାଲ, ଛାତ ଉପରୁ ଦେଖିବା ।

[ ଦୁଇଜଣଯାକ ଚାଲିଗଲେ । ଚିନ୍ମୟ ବାହାରୁ ସିଗାରେଟ୍ ଟାଣି ଟାଣି ଆସି ବୈଠକଖାନାରେ କ୍ଳାନ୍ତ ହୋଇ ସୋଫା ଉପରେ ବସିଛି । କିଛି ସମୟ ବସି ସିଗାରେଟ୍ ଟାଣିଲା ପରେ ଘର ଭିତରୁ ଆସିଛି ସାଧୁଆ ]

ସାଧୁଆ—ସାନବାବୁ ! ତମେ କେତେବେଳେ ଆଇଲ ?

[ ଚିନ୍ମୟ କିଛି ନ କହି ଗମ୍ଭୀର ଭାବରେ ସିଗାରେଟ୍ ଟାଣିବାକୁ ଲାଗିଲା ]

ସାଧୁଆ—ବଡ଼ବାବୁ ଗଲେ, ତାଙ୍କ ସାଥିରେ ଟିକେ ଦେଖା ବି କଲନି । ତ'ଣ କହିବାକୁ ଚାହୁଁଥିଲ କହିଲନି ।

ଚିନ୍ମୟ—କାହିଁକି କହିବ ? କିଏ ମୋ କଥା ଶୁଣୁଚ ?

ସାଧୁଆ—କୋଉ କଥା ତମର କିଏ ନ ଶୁଣିଲା ?

ଚିନ୍ମୟ—କୋଉ କଥା ? ତୁ ତ ସବୁ ଜାଣିଚୁ !

ସାଧୁଆ—ତମେ ମତେ କେତେବେଳେ କହିଚ ଯେ ··

ଚିନ୍ମୟ—(ଟିକିଏ ରହିଯାଇ) ଓ, ତତେ ମୁଁ କିଛି କହିନି, ନା ! (ଟିକେ ରହିଯାଇ ଦୀର୍ଘଶ୍ୱାସ ନେଇ) କହି ଲାଭ କଣ ? ତୁ କିଛି କରିପାରିବୁନି । ଯାହାକୁ କହିଲି କେହି ତ ଶୁଣିଲେନି । ଆଉ ତୁ ଶୁଣି କଣ କରିବୁ ?

ସାଧୁଆ—ସାନବାବୁ !

ଚିନ୍ମୟ—ସମସ୍ତେ ଗୃହାନ୍ତ, ମୁଁ ଏମିତି ଜଳିପୋଡ଼ି ମରୁଥିବି । ଆଉ ସମସ୍ତେ ଦୂରରେ ଥାଇ ମଜା ଦେଖୁଥିବେ ।

ସାଧୁଆ—ତ'ଣ ହେଇଚି ମତେ କହିଲେ କୁହ ସାନବାବୁ !

ଚିନ୍ମୟ—ନା, କିଛି ଶୁଣିବା ଦରକାର ନାହିଁ । ତୁ ମୋ ଲୁଗାପଟାଗୁଡ଼ା ଗୋଟେ ସୁଟ୍‌କେସ୍‌ରେ ଭର୍ତ୍ତି କରି ନେଇଆସିଲୁ···

ସାଧୁଆ—କାହିଁକି, ବାବୁ ?

ଚନ୍ଦ୍ରଧ୍ୱ—ମୁଁ ଏଠୁ ଚାଲିଯିବି ।

ସାଧୁଆ—କୁଆଡ଼େ ଯିବ ?

ଚନ୍ଦ୍ରଧ୍ୱ—ଯୁଆଡ଼େ ମନ ହବ ।

ସାଧୁଆ—ଆଉ ବୋହୂ ସାଆନ୍ତାଣୀ ?

ଚନ୍ଦ୍ରଧ୍ୱ—( ବିଦ୍ରୂପ କରି ) ବୋହୂ ସା'ନ୍ତାଣୀ···ସେ ମୋର କେହି ନୁହେଁ ।

ସାଧୁଆ—ବାବୁ, ତୁମ ମୁଣ୍ଡ ଖରାପ ହେଇଗଲାଣି ନା କଣ ?

ଚନ୍ଦ୍ରଧ୍ୱ—ମୋର କିଛି ହେଇନି । ତମମାନଙ୍କର ସମସ୍ତଙ୍କର ମୁଣ୍ଡ ଖରାପ ହେଇ-
ଯାଇଛି ।

ସାଧୁଆ—ସାନବାବୁ !

ଚନ୍ଦ୍ରଧ୍ୱ—ହଁ, ହଁ, ସମସ୍ତେ ମିଶି ମତେ ପାଗଳ କରିଦବାକୁ ବସିଚ ।
(ଚିତ୍କାର କରିଉଠିଛି) I am fed up ··I am fed up.

ସାଧୁଆ—( ଚିତ୍କାର କରି ) ବାବୁ !

ଚନ୍ଦ୍ରଧ୍ୱ—( ହଠାତ୍ ନୀରବ ହୋଇ ) ସାଧୁଆ ! ଗିଲାସେ ପାଣି ଆଣିଲୁ ।

[ ସାଧୁଆ ଗିଲାସେ ପାଣି ଆଣିଛି । ଚନ୍ଦ୍ରଧ୍ୱ ତା' ପକେଟରୁ ଏଭଳି କରି ପ୍ୟାକେଟ୍ ଖୋଲି ଗୋଟାଏ tranquilliser tablet କାଢ଼ି ପାଟିରେ ପକାଇ ପାଣି ପିଇଦେଲା ]

ସାଧୁଆ—ବାବୁ ! ଭିଟାମିନ୍ ବଟିକା ଖାଉଚ ?

ଚନ୍ଦ୍ରଧ୍ୱ—ନା, tranquilliser.

ସାଧୁଆ—କ'ଣ କହିଲ, ବାବୁ ?

ଚନ୍ଦ୍ରଧ୍ୱ—ତୁ ବୁଝିପାରିବୁନି ।

ସାଧୁଆ—ତେବେ କାହିଁକି ଖାଆନ୍ତୁ, କୁହ ।

ଚନ୍ଦ୍ରଧ୍ୱ—( କ୍ଷୋଭରେ ) ମନର ଶାନ୍ତି ପାଇଁ ।

ସାଧୁଆ—ଏଁ···ଏ ସବୁପାଇଁ ବଟିକା ବାହାରିଲାଣି ? ସାବାସ୍, କମ୍ପାନୀ କ'ଣ ନ
କରୁଚି !

ଚନ୍ଦ୍ରଧ୍ୱ—(ନିର୍ଲିପ୍ତ କଣ୍ଠରେ) ଶୁଣ ସାଧୁଆ । ମୁଁ ଯାହା କହୁଚି, ମନଦେଇ ଶୁଣ ।

ସାଧୁଆ—କୋଉ କଥା ବାବୁ ?

ଚନ୍ଦ୍ରସ୍ୱ—ଏଇ ସେଇ ଝିଅଟା କଥା ।

ସାଧୁଆ—ଝିଅଟା ? କିଏ, ବୋହୂ ସାଆନ୍ତାଣୀ ?

ଚନ୍ଦ୍ରସ୍ୱ—ତୁ ଯାହାକୁ ବୋହୂ ସା'ନ୍ତାଣୀ ଡାକୁଚୁ, ତାକୁ ମୁଁ ଚହ୍ନେ ନା, ଜାଣେ ନା । ତା ସାଙ୍ଗରେ ମୋର କୌଣସି ପରିଚୟ ନାହିଁ । ସେ କେଉଁଠୁ ଆସିଚି, କେମିତି ଆସିଚି, ସେ କଥା ମୁଁ କିଛି···କିଛି ଜାଣିନି ।

ସାଧୁଆ—କ'ଣ କହୁଚ ସାନବାବୁ !

ଚନ୍ଦ୍ରସ୍ୱ—ହଁ । ଓଃ, କି ଅଶାନ୍ତି ! ମୁଁ ଖାଇପାରୁନି, ଶୋଇପାରୁନି, କିଛି, କରିପାରୁନି, କିଛି କରିପାରୁନି ।

ସାଧୁଆ—ବୁଝିଗଲି ବାବୁ, ବୁଝିଗଲି ?

ଚନ୍ଦ୍ରସ୍ୱ—କ'ଣ ବୁଝିଗଲୁ ।

ସାଧୁଆ—ବାବୁ, ଇଏ ଗୋଟାଏ···

( ଆଖିକି ବଡ଼ ବଡ଼ କରି ଭୟ ଓ ଆତଙ୍କରେ ଚାହିଁଲା )

ଚନ୍ଦ୍ରସ୍ୱ—କ'ଣ, ରହିଗଲୁ ଯେ ?

ସାଧୁଆ—( ଭୟରେ ) ମୁଁ କହିପାରିବିନି ! ନା, ମୁଁ କହିପାରିବିନି ।

ଚନ୍ଦ୍ରସ୍ୱ—ଆରେ କ'ଣ କହୁନୁ କାହିଁକି ?

ସାଧୁଆ—ନା, କହିଲେ ତମେ ତ ପରତେ ଯିବନେଇଁ ।

ଚନ୍ଦ୍ରସ୍ୱ—ଓହୋଃ, କଥାଟା ଆଗେ କହ ।

ସାଧୁଆ—ତମେ ଏତେ ପାଠ ପଢ଼ିଚ ବାବୁ, ଜମା ବୁଝିପାରୁନା !

ଚନ୍ଦ୍ରସ୍ୱ—କ'ଣ ବୁଝିବି । କମିତି ବୁଝିବି ? ମୋର ତ ମନେହଉଚି ଏ ସବୁ ଯେମିତି ସ୍ୱପ୍ନ ଆଉ ମାୟା ।

ସାଧୁଆ—ହଁ, ଇମିତି ମାୟାବିନୀ ବେଶରେ ସେମାନେ ଆସନ୍ତି । ଦେଖିବାକୁ ପରୀ । ହେଲେ ( ଆଖି ବଡ଼ ବଡ଼ କରି ) ରକ୍ତ ଶୋଷିନିଅନ୍ତି ।

ଚନ୍ଦ୍ରସ୍ୱ—କ'ଣ କହିଲୁ ?

ସାଧୁଆ—ହଁ, ଡେଙ୍ଗା ଟୋକାଗୁଡ଼ାଙ୍କୁ ଫୁଲ ଶୁଙ୍ଘେଇ ଘଡ଼କେ ମେଣ୍ଢା କରି-ଦଅନ୍ତି । ଯୁଆନ ମରଦଗୁଡ଼ାକ ମାସକ ଭିତରେ ଶେଷ୍ ।

ଚନ୍ଦ୍ରସ୍ୱ—ସାଧୁଆ ! !

ସାଧୁଆ—ବାବୁ ଡାକ୍ତାଣୀ…

ଚନ୍ଦ୍ରସ୍ନ—( ଚତ୍କାର କରି ଉଠିଲ ) ସାଧୁଆ ! !

[ ପଶ୍ଚାତ୍ପଟରେ ଶୁଭିଲା ଏକ ମଡ଼ା ଯିବାର ଶବ୍ଦ । ଢୋଲ ଢୋଲ ବାଜା ସହିତ 'ରାମ ନାମ ସତ୍ୟ ହେ, ରାମ ନାମ ସତ୍ୟ ହେ'… ଭୟରେ ଚନ୍ଦ୍ରସ୍ନ ଓ ସାଧୁଆ ପରସ୍ପରକୁ କୁଣ୍ଢାଇପକାଇଲେ । ଶବ୍ଦଟା ଧୀରେ ଧୀରେ ଦୂରରେ ମିଶିଯାଉଛି ]

ଅନ୍ଧାର

[ ସମୟ ସନ୍ଧ୍ୟା । ଶୋଇବା ଘରଟିକୁ ଫୁଲ ଦେଇ ସଜାଉ ଦେଉଛି ନୀହାରିକା । Backgroundରୁ ଭାସିଆସୁଛି ନିମାଇଁ ଗୋସେଇଁଙ୍କ ଗୀତ । ସଦ୍ୟସ୍ନାତା ତଟିନୀ କିଛି ସମୟ ପରେ ଘରଭିତରେ ଧୂପଦାନ ଧରି ପ୍ରବେଶ କରଛି ]

ତଟିନୀ—ଏସବୁ କ'ଣ କରୁଚ ?

ନୀହାରିକା—ମୋର ଯାହା ମନ ହେଉଛି କରୁଚ ।

ତଟିନୀ—ଭାଇ ଦେଖିଲେ କ'ଣ ଭାବିବେ, କହିଲ ?

ନୀହାରିକା—ସେଇ ଲଜ୍ଜଭରମକୁ ଧରି ବସିଥାଅ । ଦେଖୁଚ, ଭାଇଙ୍କ ପାଖରେ ଶେଷ ପର୍ଯ୍ୟନ୍ତ ତୁମେ ହାରିଯିବ ।

ତଟିନୀ ମୁଁ ତ ବାଜି ରଖି ଖେଳୁନି ଯେ ତାଙ୍କ ପାଖରେ ହାରିଗଲେ ମୋର ଅପମାନ ହବ । ବରଂ ମୋତେ ହରେଇ ଜିଣିବାର ଆନନ୍ଦ ସେ ଉପଭୋଗ କରନ୍ତୁ ନା…

ନୀହାରିକା—ମୁଁ ସେସବୁ ବୁଝେନା; ମୁଁ ଆଜି ଯେମିତି ହଉ ଭାଇଙ୍କୁ ଆଉ ତୁମକୁ ଏ ଘରେ ରହିବ ପଠେଇଦେବି ।

ତଟିନୀ—ଛି…ଛି…କଣ ସବୁ କହୁଚ ? ( ଲଜ୍ଜରେ ) ମୋତେ ଯାହା ଟିକେ ବସ ମିଳୁନି…

ନୀହାରିକା—ବସ ମୁଁ ଖୋଜି ଆଣିଦେବି । ଆଗେ ଟିକେ ବସ ।

ତଟିନୀ—କଣ କୁହ ।

[ ନୀହାରିକା ତଟିନୀର ହାତ ଟାଣି ଜୋର କରି ବସେଇଦେଲା ]

ନୀହାରିକା—ଆଖି ବୁଜ ।

ତଟିନୀ—( ଆଖି ବୁଜି ) ବୁଜିଲି ।

[ ନୀହାରିକା ତଟିନୀ କପାଳରେ ଚନ୍ଦନ ଟିପା ସବୁ ପିନ୍ଧାଇଦେଲା । ମୁଣ୍ଡରେ ଫୁଲ ପିନ୍ଧାଇ-ଦେଲା ]

ତଟିନୀ—ତମେ ଯାହା କଲଣି, ମୁଁ ଆଜ ମୁହଁ ଦେଖାଇପାରିବିନି ।

ନୀହାରିକା—ମୋର ଯାହା ଖୁସି ମୁଁ କରିବି । ସବୁ ତୁମକୁ ସହିବାକୁ ପଡ଼ିବ ।

ତଟିନୀ—ତମକୁ ସିନା ଏ ସବୁ ଫିଲ୍ମଖେଳ । ହେଲେ ମୋର ତ···

ନୀହାରିକା—ତମର ତ ଶାଶୁଶଶୁର, ଗୁରୁଜନ ଏ ଘରେ କେହି ନାହାନ୍ତି । କିଏ କ'ଣ କହିବ ?

ତଟିନୀ—ଆଉ ତୁମ ଭାଇ··· ?

ନୀହାରିକା—( ଫୁଲ ପିନ୍ଧଉ ପିନ୍ଧଉ ) ଭାଇ ତୁମକୁ ଏମିତି ବେଶରେ ଦେଖିଲେ ନା···( କାନରେ କିଛି ଅଶ୍ଳୀଳ କଥା କହିଲା )

ତଟିନୀ—ଧେତ୍, ଜ ଅଲାଜୁକ ! ସେମିତି କହିଲେ ମୁଁ ସବୁ ଖୋଲିପକେଇବି ।

ନୀହାରିକା—ଶୁଣ ଅଛି ଭାଉଜ, କେବଳ ଆଜ ରାତିଟା ।

( ବାହାରେ କବାଟ ଠକ୍ ଠକ୍ ହେଲା )

ତଟିନୀ—( ଚମକିଉଠି ) ହେଇଟି, ଦାଣ୍ଡଘରେ କିଏ ଡାକିଲାଣି ।

ନୀହାରିକା—କିଏ ଆଉ, ଭାଇ ହେଇଥିବେ । ଆଉ···ତମେ ଆସ ମୋ ସାଙ୍ଗରେ । ଭାଇ ଆସି ତୁମକୁ ଟିକେ ଖୋଜନ୍ତୁ ।

[ ନୀହାରିକା ଓ ତଟିନୀ ଚାଲିଯାଇଛନ୍ତି । ବାହାରୁ ସାଧୁଆ ଓ ଜନୈକ ଶଙ୍କାକୁଳ ଅବସ୍ଥାରେ ପ୍ରବେଶ କରିବାର ଦେଖାଗଲା ବୈଠକଖାନାରେ ]

ସାଧୁଆ—ଦେଖ ସାନବାବୁ, ଶୁଣିଆ କହୁଚ, ମୋଟେ ଡରିବନି । ଠିକ୍ କରି ମନ୍ତ୍ରଟା ପଢ଼ିବ, ତା' ପରେ ସେଇଟାକୁ ମୁହଁ ପାଖରେ···

ଚନ୍ଦ୍ରପ୍ପ –( ଭୟରେ ) ସାଧୁଆ !

ସାଧୁଆ—ଭଣ କହୁଚ ?

ଚନ୍ଦ୍ରପ୍ପ—ମୁଁ ଏକା ଯିବି ? ( ଗ୍ଭନ୍ଦଆ ହୋଇ )

ସାଧୁଆ— କାହିଁ ଯିବନ ? ଡର ଅଛୁ ? ଗୁଣିଆ ପରା ତୁମକୁ ଗୋଟେ ତେଉଁରିଆ ଦେଇଚ !

ଚନ୍ଦ୍ରପ୍ପ - ( ଅସହାୟ ଭାବେ ) ଏ , ତେଉଁରିଆ···( ଅଣ୍ଟାକୁ ଦେଖିଲା ତେଉଁରିଆଟା ଅଛୁ ) ହେଲେ ଏ ତେଉଁରିଆଟା ଠିକ୍ କାମ ଦବ ତ ?

ସାଧୁଆ—ମନ୍ତ୍ର ! ପରା ତେଉଁରିଆ ଦେଇକରି ସିଏ ତୁମ ଅଷ୍ଟାଙ୍ଗ ଶରୀରଟାକୁ କିଳ-ଦେଇଚ ··ଭୂତ, ପ୍ରେତ, ଡାହାଣୀ, ଦେପିସ, ବ୍ରହ୍ମରାକ୍ଷସ···କେହି ତୁମର କିଛୁ କରିପାରିବେ ନାହିଁ ।

ଚନ୍ଦ୍ରପ୍ପ—ହଁ, ବୁଝିଲି । ଦେହଟାକୁ କିଳି ଦେଇଛନ୍ତି, ହେଲେ ମନଟା···

ସାଧୁଆ—ମନଟାକୁ ଟାଣ କର ସାନବାବୁ, ମନଟାକୁ ଟାଣ କର ।

[ ଚନ୍ଦ୍ରପ୍ପ ସାଧୁଆର ହାତଟାକୁ ନେଇ ନିଜ ମୁଠରେ ରଖିଲା ]

ସାଧୁଆ—ଧଡ଼ପଡ଼, ଧଡ଼ପଡ଼, ଧଡ଼ପଡ଼ ହଉଚ । ହବ ବାବୁ, ସେଇମିତି ହବ । ଏ ତ ବାଘଭାଲୁ କଥା ନୁହେଁ ଯେ ଗୁଳିଟେ ମାରିଦବ ( ଗୁଳି ମାରିବାର ଅଭିନୟ କରି ) ଢୋ—ଖତମ୍ । ଇଏ ପରା ଡାହାଣୀ, ଆଖିଦୁଇଟାରେ ରକ୍ତ ଶୋଷି ପିଇଯିବ ।

ଚନ୍ଦ୍ରପ୍ପ—( ଭୟରେ ) ସାଧୁଆ ! ମୁଁ ଏକା ଯିବନି, ତୁ ମୋ ସାଙ୍ଗରେ ଚାଲ୍ ।

ସାଧୁଆ—ଗୁଣିଆ ପରା କହୁଚ, ତୁମେ ଏକା ଯିବ ।

ଚନ୍ଦ୍ରପ୍ପ —ହେଲେ ମୋର ତ ମୋଟେ ସାହସ ହଉନ ।

ସାଧୁଆ—ହନୁମନ୍ତ ସାନବାବୁ, ହନୁମନ୍ତ···ଡର ମାଡ଼ିଲେ ମନ୍ତ୍ରଟାକୁ ଜୋରରେ ଜୋରରେ ପଢ଼ିବେ ।

[ ଚନ୍ଦ୍ରପ୍ପ ଆଖିବୁଜି ଅବୋଧ ଭାଷାରେ ମନ୍ତ୍ର ପଢ଼ିବାକୁ ଆରମ୍ଭ କରିଦେଲା—'ଓଁ ହ୍ଲୀଂ କ୍ଲୀଂ କ୍ଲୀଂ' । ଡକିନୀ ଆସିଲା ଭିତରୁ । ତା'ର ସ୍ୱାଭାବିକତାରେ ସିଏ ଏକ ନବବିବାହିତା ବୋହୂ

ଭଲ ଦେଖାଯାଉଛି । ସୁନା ଗହଣାରେ ଗୁଡ଼ଇ ହୋଇଛି । ସେ ଆସି ଦେଖିଲା ତନ୍ମୟ ଆଖିବୁଜି ଅସ୍ଫୁଟ ସ୍ୱରରେ କଣ ଶବ୍ଦ ଉଚ୍ଚାରଣ କରୁଛି ]

ତଟିନୀ—( ତନ୍ମୟ ପାଖକୁ ଆସି ) କଣ ପାଠ ମୁଖସ୍ଥ ଚାଲିଛି ?

ତନ୍ମୟ—( ଚହଁଟଦେଇ ) ଏଁ ! ପାଠ !! ( ତଟିନୀକୁ ଦେଖି ଆଖି ବୁଜିଦେଇ ଜୋରଜୋର ମନ୍ତ୍ର ଉଚ୍ଚାରଣ କଲା ) ଓଁ ସ୍ୱାଂ କ୍ଲୀଂ କ୍ଲୀଂ ।

ତଟିନୀ—ତମ ପାଇଁ ପିଠା ଥୁଆ ହୋଇଛି. ଆଗେ ଖାଇଦିଅ—ତା ପରେ ଘଣ୍ଟେ ଯାଏ ବସି ପାଠ ମୁଖସ୍ଥ କରିବ ।

ତନ୍ମୟ—( ଡେଉଁରିଆ ଉପରେ ହାତ ପକେଇ ) ପିଠା !

ତଟିନୀ—ହଁ. ତମ ଦେହୁଲା ଭଉଣୀର ଆଜି ଜନ୍ମଦିନ । ଦେଖୁନା, ଘରଦୁଆର କେମିତି ସଜେଇଛି !

ତନ୍ମୟ—ହଁ, ହଁ, ବେଶ୍ ହୋଇଛି, ସୁନ୍ଦର ହୋଇଛି ।

ତଟିନୀ—ମୁଁ ତମପାଇଁ ପିଠା ଆଣୁଛି ।

ତନ୍ମୟ—ନାଁ, ନାଁ, ମୁଁ ଖାଇବିନି, ମୋର ଭୋକ ନାହିଁ ।

ତଟିନୀ—( ଆହତ ଢଙ୍ଗରେ ) ମତେ ତୁମେ ଭଲ ନ ପାଅ, ମତେ ତୁମେ କଷ୍ଟ ଦିଅ, ସବୁ ମୁଁ ସହୁଛି, ସହିବି । ହେଲେ ତୁମ ଭଉଣୀ ଆଗରେ ଏମିତି କୁହନାହିଁ । ସେ ପିଲାଲୋକ ହେଲେ ବି ମନେ ମନେ କ'ଣ ଭାବିବ କହିଲ ?

ତନ୍ମୟ—ମନେ ମନେ ଭାବିବ ? କଣ ଭାବିବ ?

ତଟିନୀ—ତମ ମୋ ଭିତରେ···

ତନ୍ମୟ—କଳି କଜିଆ ତ କିଛି ହେଉନି ।

ତଟିନୀ—ଭଲ ପାଇବା ବି ନାହିଁ ।

ତନ୍ମୟ—ନା, ନା, କିଏ କହିଲା ।

ତଟିନୀ—ଏ କଥା କଣ କେହି କାହାରିକି ମୁହଁ ଖୋଲି କହେ ।

ତନ୍ମୟ—ତମେ ଭୁଲ ବୁଝୁଛ ।

ତଟିନୀ—ଭୁଲ ବୁଝିନି ! ତମେ ଯଦି···

ତନ୍ମୟ—ମୁଁ ଯଦି···

ତଟିନୀ—ଆଜ ସନ୍ଧ୍ୟାଟା ମତେ ଗୁଡ଼ା ଭୁଆଡ଼େ ନ ଯାଅ ।

ଚନ୍ଦ୍ରସ୍ୱ—ଏ, କଣ କହୁଛ ? ଏଠି ମୁଁ ରହିବି ?

[ ଭୟରେ ଓଁ ହ୍ରାଂ କ୍ଲୀଂ କ୍ଲୀଂ ମନ୍ତ୍ର ଜପିବାକୁ ଆରମ୍ଭ କରିଦେଲେ ]

ତଟିନୀ—ପୁଣି ଡ଼ାଏଲଗ୍ ।

ଚନ୍ଦ୍ରସ୍ୱ—ନା ମୁଁ ଯିବିନି । ଏଇଠି ରହିବି ।

ତଟିନୀ—ସତ କହୁଛ ?

ଚନ୍ଦ୍ରସ୍ୱ—ହଁ ! ଏଇ ସନ୍ଧ୍ୟା, ଏଇ ଫୁଲ, ଏଇ ଜହ୍ନ ଆଉ ତମେ···ସବୁ···ସବୁ ଆଜି ନୂଆ ମନେହେଉଛି !

ତଟିନୀ—ଏ ପୁଣି ଡ଼ାଏଲଗ୍ ନୁହେଁ ତ ?

ଚନ୍ଦ୍ରସ୍ୱ—ନା, ପ୍ରତ୍ୟେକ ଅଭିନେତାକୁ ଜୀବନରେ ଏଇ ଧରଣର ପ୍ରଶ୍ନ ଶୁଣିବାକୁ ପଡ଼େ ।

ତଟିନୀ—ଆଉ ସେ ପ୍ରଶ୍ନର ଉତ୍ତରଟା ସେ ଠିକ୍ ଭାବରେ ଦେଇପାରେ ନା ।

ଚନ୍ଦ୍ରସ୍ୱ—କାରଣ, ତା ପାଇଁ ଜୀବନଟା ଅଭିନୟ କି ଅଭିନୟଟା ଜୀବନ·· ଏ ପ୍ରଶ୍ନଟା ଚିରନ୍ତନ ପ୍ରଶ୍ନ ହୋଇ ରହେ ।

ତଟିନୀ—ସହଜରେ ଖସିଯିବ ବୋଲି ଭାବିଚ ନା, ମୁଁ କିନ୍ତୁ ଶୁଣିବିନି ।

ଚନ୍ଦ୍ରସ୍ୱ—ନା ତଟିନୀ, ଆଜିଯାଏ ମୁଁ କେବଳ ଖିଆଲ, ଖୁସି, ସବୁନେଇ ସମୟର ଅପଚୟ କରିଆସିଛି । ଜୀବନରେ ଏକମାତ୍ର ସଞ୍ଚୟ ମୋର ଏଇ ଅପଚୟ ।

ତଟିନୀ—ମୋ ପାଇଁ ତ କେବେ ଖର୍ଚ୍ଚ କଲ ନାହିଁ, ନା ଦେହ ନା ମନ ?

ଚନ୍ଦ୍ରସ୍ୱ—ମୁଁ ଜାଣେ, ମୋ ପାଇଁ ତମେ ଅପେକ୍ଷା କରିଚ···

ସ୍ନେହ ମମତା ନେଇ···
ଭଲ ପାଇବା ନେଇ
ଚନ୍ଦ୍ରାସ୍ନାନ ଆଖିର ପ୍ରଦୀପ ଜାଳି ।
ମୁଁ କିନ୍ତୁ କିଛି···କିଛି···ଦେଇପାରୁନି—

(ତଟିନୀ ଲୁହ ଛଳଛଳ ଆଖିରେ କାନ୍ଧ ପକେଇଲା)

ତଟିନୀ—( ଅଶ୍ରୁ ଆବେଗରେ ) ଅନେକ ଡେରିରେ ତୁମେ ମୋ କଥା ବୁଝିଲ ।

ଚନ୍ଦ୍ରସ୍ୱ—ତମେ କାନ୍ଦୁଚ ! !

ତଟିନୀ—ନା, ଲୁହ ଭିତରେ ମୋ ହସ ତୁମେ ଦେଖିପାରୁନା ?

ତନ୍ମୟ—( ଛଳନାର ଆବେଗରେ ) ତଟିନୀ !

ତଟିନୀ—ଆଖି ଲୁହରେ ହସିବାର ସାର୍ଥକତା ତୁମେ ବୁଝିବନି । ନା, ନା, ତୁମେ କିଛୁ ବୁଝିବନି । ( ତଟିନୀ ଫୁଲିଯାଉଥିଲା )

ତନ୍ମୟ—ଶୁଣ ! ( ପଣତକାନିଟା ଧରିନେଇଛି )

ତଟିନୀ—ଛି···ଛାଡ଼ ।

ତନ୍ମୟ—ଛାଡ଼ିଦେବି ? କଣ ଭାବିଚ ?

ତଟିନୀ—ତମେ ଖୁବ୍ ଇଏ···( ଲାଜରେ ଝାଉଁଳି ପଡ଼ିଛି )

ତନ୍ମୟ—ତମେ ଭାବିଚ ମୁଁ ଗୋଟାଏ ନିରୀହ ମେଣ୍ଢାଛୁଆ ?

ତଟିନୀ—( ଦୁଷ୍ଟାମିର ହସହସି ) ହଁ, ହଁ, ହେଇଆ ।

ତନ୍ମୟ—ଆଦୌ ନୁହେଁ···ମୁଁ ବାଘ ( ଦୃଢ଼ତାର ସହିତ )

ତଟିନୀ—ହଁ, 'ବାଘ', କିନ୍ତୁ ଦାନ୍ତ ଉଠିନି ।

ତନ୍ମୟ—ଆଚ୍ଛା ! କାମୁଡ଼ିବି ଦେଖିବ ?

ତଟିନୀ—( Challaenging voice ) ଦେଖି !

[ ତନ୍ମୟ ତଟିନୀର ଆଙ୍ଗୁଳିଟାକୁ କାମୁଡ଼ିଦେଇଛି । ତଟିନୀ ଚିତ୍କାର କରି ଉଠିଛି — ଆଃ ]

ତନ୍ମୟ—କଣ ? ବାଘର ଦାନ୍ତ ଉଠିଚି କି ନାହିଁ ?

ତଟିନୀ—ଉଠିଚି···ଉଠିଚି···ଉଠିଚି । ଏଣିକି ତୁମକୁ ପିଞ୍ଜରାରେ ବନ୍ଦ କରିବା ନିହାତି ଦରକାର ।

ତନ୍ମୟ—ପିଞ୍ଜରାରେ ବନ୍ଦ କର କି ଜଞ୍ଜିରରେ ବାନ୍ଧ, ଖାଇବାକୁ ଦେଲେ ହେଲା ।

ତଟିନୀ—ବାଧ୍ୟ ହୋଇ ଦବାକୁ ପଡ଼ିବ ।

ତନ୍ମୟ—ବାଧ୍ୟ ହେବ ? ?

ତଟିନୀ—ହଁ, ନ ହେଲେ ମତେ ଖାଇଯିବ ଯେ !

ତନ୍ମୟ—ହଁ ଖାଇଯିବି ।

[ ଦୁଇହାତ ବଢ଼େଇ ତଟିନୀ ଆଡ଼କୁ ମାଡ଼ିଯାଇଛି । ତଟିନୀ ପଳେଇ ପଳେଇ ଯାଇ ଶୋଇବା ଘରେ ପଶିଯାଇଛି । ତନ୍ମୟ ତା'ର ଦୁଇ ହାତରେ

ତଟିନୀର ଦୁଇ ହାତକୁ ଧରି ଧରି ବେକ ପର୍ଯ୍ୟନ୍ତ
ହାତ ନେଇଯାଇଛି । ତଟିନୀ ଗ୍ଲୁହଆରେ
ବିଛଣାରେ ପଡ଼ିଯାଇଛି ଚିତ୍ ହୋଇ । ତନ୍ମୟ
ତାର ବେକକୁ ଚିପିଧରି ଚିତ୍କାର କରିଉଠିଛି ]
କହ କହ ତୁ କିଏ ?

ତଟିନୀ—( ଆତଙ୍କରେ ) ଏବେ କଣ କରୁଛ ?
ତନ୍ମୟ—କହ, କହ, ତୁ କିଏ ?
ତଟିନୀ—ମୁଁ, ମୁଁ ତୁମ ସ୍ତ୍ରୀ···ମୁଁ ତଟିନୀ ।
ତନ୍ମୟ—ନା, ନା, ମିଛ ।
ତଟିନୀ—( ବିକଳରେ ) ବିଶ୍ୱାସ କର, ମତେ ବିଶ୍ୱାସ କର, ମୁଁ ତମ ସ୍ତ୍ରୀ ।
ତନ୍ମୟ—ନା, ତୁ ମୋର ସ୍ତ୍ରୀ ନୁହଁ, ତୁ ଗୋଟାଏ ଡାହାଣୀ ।
ତଟିନୀ—ତୁମେ ଏବେ କ'ଣ କହୁଛ ?
ତନ୍ମୟ—ଆଜି ଧରାପଡ଼ିଯାଇଛ···ମୁଁ ତତେ ଗୁଣ୍ଡିବନ ।

[ ତଟିନୀର ତଣ୍ଟି ଚିପି ଧରିଛି । ବେହୋସ କରି
ତଳେ ଫୋପାଡ଼ି ଦେଇ ଜୋରରେ ହସି ଉଠିଛି ]

ହାଃ ହାଃ ହାଃ············

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ସମୟ ସକାଳ । ବୈଠକଖାନାରେ ନୀହାରିକା ବସି ଗୀଟାର ବଜାଉଛି । ସେହି ଗୀଟାରର ଝଙ୍କାରରେ ସମଗ୍ର ପରିବେଶ ସଙ୍ଗୀତମୟ ହୋଇ ଉଠିଛି । ଶୋଇବା ଘର ଭିତରେ ଦେଖାଗଲା ତଟିନୀ ଗାଧୋଇ ସ୍ନାନ ପ୍ରବେଶ କରିଛି । ମୁଣ୍ଡର ଓଦା ବାଳ ଖୋଲାହୋଇ ଲୋଟିପଡ଼ିଛି ପିଠି ଉପରେ । ପରିଧାନରେ ସମ୍ବଲପୁରୀ ଶାଢ଼ୀ । ତଟିନୀ ହାତରେ ଧୂପକାଠି ଧରି କାନ୍ଥରେ ଥିବା ଠାକୁରଙ୍କ ପାଖରେ ନେଇ ଲଗାଇଲା, ଫୁଲ-ଦେଲା ଓ ପ୍ରଣାମ କଲା । ତା ପରେ ଗୋଟିଏ ଫୁଲ ହାତରେ ଧରି ବୈଠକଖାନାରେ ଗୀଟାର ବଜାଉଥିବା ତ ନଣନ୍ଦ ନୀହାରିକା ମୁଣ୍ଡରେ ସେଇଟା ଖୋସିଦେଇ କହିଲା— ]

ତଟିନୀ—ଆଉ କେତେ ଆଉ । ସ୍କୁଲ ଯାଇବ···

ନୀହାରିକା—ମୁଁ···( ସେମିତି ଗୀଟାର ବଜାଉ ବଜାଉ ) ମୁ ଯାଇବନି ।

ତଟିନୀ—କଣ ହେଇଚ ?

ନୀହାରିକା—କିଛି ନାଇଁ ।

ତଟିନୀ—( ଗେହ୍ଲେଇ ହେଇ ) ରାଗିଚ ?

ନୀହାରିକା—ହଁ, ଖୁବ୍ ।

ତଟିନୀ—ସତେ ?

ନୀହାରିକା—ତମେ ମତେ କାଲି କ'ଣ କହୁଥିଲ ?

ତଟିନୀ—ମନେ ପଡ଼ୁନି ।

ନୀହାରିକା—କାମ ସରିଗଲେ ସମସ୍ତେ ଏମିତି ଠକନ୍ତି ।

ତଟିନୀ—ରାଣ ଅଛି, ମନେ ପଡ଼ୁନି ।

ନୀହାରିକା—ମନେ ପକେଇ ଦେବି ?

ତଟିନୀ—କୁହ ।

ନୀହାରିକା—କାଲି ରାତିରେ···( କାନ ପାଖରେ ଫୁସ୍ ଫୁସ୍ କରି କ'ଣ କହିଲା )

ତଟିନୀ—ଧେତ୍ ! ( ତଟିନୀର ମୁହଁ ଲାଲ ହୋଇଗଲା )

ନୀହାରିକା—ନା, ସେମିତି ଫାଙ୍କି ଦେଲେ ମୁଁ ଶୁଣିବିନି । ତମେ promise କରିଚ ।

ତଟିନୀ—ଛି, ସେ ସବୁ କଥା କ'ଣ କହିହୁଏ ?

ନୀହାରିକା—ଦେଖ ଭଉଜ ଏତେ କଷ୍ଟ କରି ମୁଁ କାଲି ଘର ସଜେଇଲି, କୁଙ୍କୁମ, ଚନ୍ଦନ ଦେଇ ତୁମକୁ ସଜେଇଦେଲି, ମୁଣ୍ଡ ବାନ୍ଧିଦେଲି···

ତଟିନୀ—ମୁଁ ବି ଦିନେ ତମକୁ ସେମିତି ସଜେଇ ମୋ ଋଣ ଶୁଝେଇଦେବି ।

ନୀହାରିକା—ନାଁ । ଋଣ ଶୁଝିବା ଦରକାର ନାହିଁ । ତମେ କଥା ଦେଇଚ, କହିବାକୁ ପଡ଼ିବ ।

ତଟିନୀ—ହଉ, ହେଲା, କହିବି ।

ନୀହାରିକା—କୁହ ।

ତଟିନୀ—ଆଜି ଘରକାମ ବହୁତ ଅଛି ।

( ତଟିନୀ ଗୁଡ଼ ଗୁଡ଼ ହୋଇ ଚାଲି ଯାଉଥିଲା )

ନୀହାରିକା—( ପାଟିକରି ଉଠିଲା ) ଭଉଜ ! ତୁମକୁ ମୋ ରାଣ ।

ତଟିନୀ—ଛି, ଏଇକଥା ପାଇଁ ରାଣ ପକଉଚ ।

ନୀହାରିକା—ହଁ, ଏପର୍ଯ୍ୟନ୍ତ ଖାଲି ମୋ ରାଣ ପକେଇଚ, ଯଦି ନ କହିବ ତେବେ ଭାଇଙ୍କ ରାଣ ପକେଇ ଦେବି ।

[ ତଟିନୀ ଫେରିଆସି ନୀହାରିକାର ପାଟିକୁ ଚପି ଧରିଲା ]

ତଟିନୀ—ତମରୁ ଯୋଉ ଜିଦ୍ ।

ନୀହାରିକା—ହଁ, ଜିଦ୍ ।

ତଟିନୀ—ଦେଖ୍, ଶୁଣ । କାଲି ଗାଡ଼ିରେ ତମ ଭାଇ ଅନେକ ଡେରି କରି ଘରକୁ ଫେରିଲେ ।

ନୀହାରିକା—ଆହା, ସେଇଟା କ'ଣ ମୁଁ ଜାଣିନି ? ତା'ପରେ କ'ଣ ହେଲା କୁହ ।

ତଟିନୀ—ତା'ପରେ...ପଛଆଡୁ ଆସି ମୋ ଆଖି ଦି'ଟାକୁ ବୁଜି ଦେଇଲେ ।

ନୀହାରିକା—ବନ୍ଦ କଲ କାହିଁକି ? କୁହ, କୁହ ।

ତଟିନୀ—ତା'ପରେ କହିଲେ, ସବୁକିଛି ଆଜି ନୂଆଭଳି ଲାଗୁଛି । ଏଇ ଫୁଲ, ଏଇ ଜୋଛନା, ଏଇ ଗାଡ଼ି...ଆଉ ତମେ...ସବୁକିଛି...

ନୀହାରିକା—ତା'ପରେ ?

ତଟିନୀ—ତା'ପରେ ସେ ମୋତେ ଦି' ହାତରେ ଛାତି ଉପରକୁ ଟାଣିନେଲେ, ଆଉ କାନ ପାଖରେ କହିଲେ, "ତୁମକୁ ଛାଡ଼ି ମୁଁ କୁଆଡ଼େ ଯିବନି ।"

ନୀହାରିକା—ଓଃ ହୋ । ଏଇଟି କ'ଣ ବନ୍ଦ କରିବା କଥା । କଥା କହିଲାବେଳେ ତ କମା ଫୁଲଷ୍ଟପ୍ କିଛି ଦରକାର ନାହିଁ । ହଁ, ତା'ପରେ ।

ତଟିନୀ—ତା'ପରେ ଯା' ହେଲା ମୁଁ କହିପାରିବନି ।

ନୀହାରିକା—କାହିଁ କହିପାରିବନି ?

ତଟିନୀ—ସେସବୁ କ'ଣ କହିହୁଏ ? ?

ନୀହାରିକା—ତମେ ଏତେ ମିଛ କହିପାର ?

ତଟିନୀ—ମିଛ ।

ନୀହାରିକା—ହଁ, 'ମ'ରେ 'ହ୍ରସ୍ୱଇକାର 'ଛ', ବଡ଼ ବଡ଼ ଅକ୍ଷରରେ "ମିଛ" । ତଟିନୀ କ'ଣ ମିଛ ?

ନୀହାରିକା—ଭାବୁଛ କାଲି ଗାଡ଼ିରେ କ'ଣ ହୋଇଛି ମୁଁ କିଛି ଜାଣିନି ?

ତଟିନୀ—କ'ଣ ଜାଣିଛ ?

ନୀହାରିକା—( ରାଗ ଓ ଅଭିମାନରେ ) ଜାଣିଛି । ସବୁ ଜାଣିଛି ।

ତଟିନୀ—ତମେ ଚୁପ୍ କର ।

ନୀହାରିକା—ଏମିତି ବନ୍ଧୁ ତୁମେ ମୋ ମୁହଁ ବନ୍ଦ କରିଦେବାକୁ ଚାହୁଁଛ ? ମୁଁ କିନ୍ତୁ ଆଜି ଚିତ୍କାର କରି କହିବି, ତମେ ଯାହାକୁ ଦେବତା ବୋଲି ପୂଜା କରୁଛ ··ସେ ପଥର । ସେ ତୁମର ଗୋଡ଼ଧୂଳିକି ବି ସରି ନୁହନ୍ତି ।

ତଟିନୀ—ନା ।

[ ତଟିନୀ ନୀହାରିକାକୁ ଗୋଟେ ଚଟକଣା ମାରିଛି । ନୀହାରିକା ଲୁହ ଛଳଛଳ ଆଖିରେ କିଛିକ୍ଷଣ ସ୍ତବ୍ଧ ହୋଇ ଠିଆ ହୋଇଛି, ତା'ପରେ କହୁଛି— ]

ନୀହାରିକା—ଆଉ କେବେ ମୁଁ ଏସବୁ କଥା ତୁମକୁ କହିବିନି ଭାଉଜ, ଆଉ କେବେ କିଛି କହିବିନି ।

[ ନୀହାରିକା ତଳକୁ ମୁହଁ ପୋତି ବୈଠକ-ଖାନାରୁ ଶୋଇବା ଘରକୁ ଗଲା । ତଟିନୀ ତା' ପଛେ ପଛେ ଯାଇ ତା ମୁହଁ ଟିକି ଟେକିଧରି କହିଲା— ]

ତଟିନୀ—ମୋର ଭୁଲ ହୋଇଗଲା; ରଜା ! ମୋ ସୁନାଟା ! ମୋ ଧନଟା !

ନୀହାରିକା—ଈଶ୍ୱରଙ୍କର ତମ ପ୍ରତି ଯୋଉ ଅବିଚାର ମୁଁ ସହିପାରିଲିନି ଭାଉଜ ! କାହିଁକି ତୁମେ ଏ ଘରକୁ ଆସିଲ ? କାହିଁକି ତୁମେ ନିଜେ ଜଳିପୋଡ଼ି ଅଙ୍ଗାର ହେବାକୁ ବସିଛ ? ନିଜେ କାନ୍ଦି ସବୁରି ମୁହଁରେ ହସ ଦେଖିବାକୁ ଚାହୁଁଛ ?

ତଟିନୀ—( ଓଠରେ ଶୁଷ୍କ ହସ ଫୁଟାଇ ) ମୁଁ ଏ ଘରର 'ବୋହୂ' । ମୁଁ ନ ହସିଲେ ମୋ ଶ୍ୱଶୁରଘରର ଦୁନିଆ ହସିବ କେମିତି ? ତମେ ହସିବ କେମିତି ? ତମ ଭାଇ ହସିବେ କେମିତି ?

ନୀହାରିକା—ତୁମ କଥା ମୁଁ ବୁଝିପାରୁନି, ଭାଉଜ !

ତଟିନୀ—ଘରର ବୋହୂକୁ ଏଇଆ କରିବାକୁ ପଡ଼େ ରଜା ! ଆପଣା ଆଖିର ଲୁହ, ଛାତିର କୋହ ବୁକୁପିଞ୍ଜର ଓଠରେ ହସ ଖେଳେଇ ସମସ୍ତଙ୍କୁ ହସାଇବାକୁ ପଡ଼େ; ସ୍ନେହ ସୁହାଗ ଢାଳି ସଭିଙ୍କ ସେବା କରିବାକୁ ହୁଏ ।

ନୀହାରିକା—ସେ ତ ସୀତା ସାବିତ୍ରୀ ଯୁଗର କଥା ।

ତଟିନୀ—ସେ ଯୁଗ ଆଉ ଏ ଯୁଗ ଭିତରେ କ'ଣ କିଛି ତଫାତ୍ ଅଛି ?
ନୀହାରିକା—ହଁ, ଅଛି । ଲୋକେ ଏଭରେଷ୍ଟ ଚଢ଼ିଲେଣି, ଚନ୍ଦ୍ରରେ ଯାଇଁ ପତାକା ଉଡ଼େଇ ଆସିଲେ । ଜୀବନଟା ଆଜି ଖାଲି ଯୁଦ୍ଧ ।
ତଟିନୀ—ହଁ, ଜୀବନଟା ଯୁଦ୍ଧ । ବଞ୍ଚି ରହିବାପାଇଁ ଯୁଦ୍ଧ; ଆଉ ସେ ଯୁଦ୍ଧରେ କ୍ଷତ ବିକ୍ଷତ ମଣିଷ ପାଇଁ ଆଜି ସବୁଠୁଁ ବେଶି ପ୍ରୟୋଜନ ସେବା, ଶୁଶ୍ରୂଷା, ମମତା ।
ନୀହାରିକା—ସତରେ !
ତଟିନୀ—ହଁ, ଈଶା, ସେଇ ମମତା ଦେଇପାରେ କେବଳ ନାରୀ ।
ନୀହାରିକା—ସ୍ୱାମୀଙ୍କର ନିଷ୍ଠୁର ଅବହେଳା ପରେ ବି ତମେ ଏକଥା କହିପାରୁଚ ?
ତଟିନୀ—ଅବହେଳା ! (ମନରେ ଦୁଃଖ ନେଇ ବିଦ୍ରୂପର ହସ ହସି ଫୁଲଦାନିଟିକୁ ଟେକି ଆଣି ) ଜାଣ ଈଶା, ପ୍ରତିଦିନ ସକାଳେ ଏଇ ଫୁଲଦାନିରୁ ଗତଦିନର ବାସିଫୁଲ ଫିଙ୍ଗି ଦେବାକୁ ପଡ଼େ; ତା'ର ସାଙ୍ଗରେ ମୋର ଗତଦିନର ସବୁ ଦୁଃଖ, ସବୁ ଲୁହ ମୁଁ ଫିଙ୍ଗି ଦେଇଥାଏ । ଆଉ ପ୍ରତିଦିନର ନୂଆ ସକାଳଟାକୁ ସଜେଇଥାଏ ନୂଆ ଫୁଲରେ । ସେ ଫୁଲ ମୋର ଆଶା ଆନନ୍ଦର ଫୁଲ, ସ୍ୱପ୍ନ ଆଉ କଳ୍ପନାର ପାଖୁଡ଼ା ।
ନୀହାରିକା—ନା, ମିଛ ଏ ସବୁ ଆଦର୍ଶ । ଖାଲି ଛଳନା ।
ତଟିନୀ—( ହସି ହସି ) ଛଳନା ! ଆଚ୍ଛା, ତମେ ହୋଇଥିଲେ କ'ଣ କରନ୍ତ ?
ନୀହାରିକା—ସିଧା ରାସ୍ତା, ଅର୍ଥାତ୍ drivorce.
ତଟିନୀ—ଛାଡ଼ପତ୍ର ?
ନୀହାରିକା—ହଁ, mutual, ଅର୍ଥାତ୍ ପରସ୍ପରର ବୁଝାମଣାରେ, ଯେଉଁଥିରେ କାହାର କିଛି ଦୁଃଖ କରିବାର ନ ଥିବ ।
ତଟିନୀ—ସତରେ ତମେ ଏଇଆ କରିପାରନ୍ତ ?
ନୀହାରିକା—କରିପାରନ୍ତି ନୁହେଁ, କରିପାରିଛି ।
ତଟିନୀ—( ଆଶ୍ଚର୍ଯ୍ୟରେ ) ପାରିଛ !
ନୀହାରିକା—ମୋର ବି ଦିନେ ବେଦୀ ଉପରେ ହାତଗଣ୍ଠି ପଡ଼ିଥିଲା ।
ତଟିନୀ—ଏଁ, କଣ କହୁଚ ? ହାତଗଣ୍ଠି……

ନୀହାରିକା —( ଖୁବ୍ ସହଜ ଭାବରେ ) ହଁ, ଦେହରେ ଯୋଉଁଠି ହଳଦୀ ମାଖି ସାଗୁଦାନା ଉପାସ ରହି, ଲମ୍ବା ଓଢ଼ଣା ଟାଣି, ହୋମ ନିଆଁରେ ଦେହସାରା ଝାଳ ଗମ ଗମ ହୋଇ ପୁରୋହିତଙ୍କ ମନ୍ତ୍ର ଶୁଣିବା ଅନୁଭୂତି ମୋ ଜୀବନରେ ବି ହୋଇଛି ।

ତଟିନୀ—ତୁମେ ବାହା ହୋଇଛ ଅଥଚ ତୁମ ମୁଣ୍ଡରେ ସିନ୍ଦୁର ନାହିଁ ?

ନୀହାରିକା  ମଣିଷଟାକୁ ଯିଏ accept କଲାନି, ସିନ୍ଦୁରଟାକୁ କାହିଁ ସ୍ୱୀକାର କରିବ ? ସବୁ ପୋଛି ସଫା କରିଦେଇଛି ।

ତଟିନୀ—ମୁଁ ଭାବିପାରୁନି ତମେ କ'ଣ ?

ନୀହାରିକା—ମୁଁ ମଣିଷ । ତମ ଭଳିଆ ମିଛ ଆଦର୍ଶ ନେଇ ବଞ୍ଚେନି । ମୁଁ ବୁଝେ, marriage is a contract. ସ୍ୱାମୀ, ସ୍ତ୍ରୀ ଦି'ଜଣ partner. ଟିକେ ଅଘଟ ହେଲା ତ partnership dissolved.

ତଟିନୀ—କଣ ଅଘଟ ହେଲା ତାଙ୍କ ?

ନୀହାରିକା—ସିଏ ମୋ କଥା ଶୁଣିଲେନି ।

ତଟିନୀ—କ'ଣ ଶୁଣିଲେନି ?

ନୀହାରିକା—ମୁଁ ଯାହା କହୁଥିଲି ।

ତଟିନୀ—କ'ଣ କହୁଥିଲ ?

ନୀହାରିକା—ସବୁ ସ୍ତ୍ରୀ ଯାହା କହନ୍ତି ।

ତଟିନୀ—ତମ ବାପା ହଇ ତ ତୁମକୁ ଖୁବ୍ ଭଲ ଘର ବର ଦେଖି…

ନୀହାରିକା—ନା ନା ମୁଁ ସେ ସବୁ chance ତାଙ୍କୁ ଦେଇନି । ଜାତକ ପଢ଼ିବ, ଘର ବର ଦେଖାଯିବ, ଏସବୁ ଆଦିମ ପ୍ରଥାରେ ମୁଁ ବିଶ୍ୱାସ କରେନି ।

ତଟିନୀ—ତା'ହେଲେ ତମେ ତାଙ୍କୁ ନିଜେ…

ନୀହାରିକା—ହଁ ଭଲ ପାଇଥିଲି ।

ତଟିନୀ—କ'ଣ କଲେଜରେ ଚାକିରି ?

ନୀହାରିକା—ହଁ, ସେ ଥିଲେ political scienceର lecturer ଆଉ ମୁଁ 3rd year ଛାତ୍ରୀ । Tutorial class ରେ ପରିଚୟଟା ନିବିଡ଼ ହେଲା । ତା'ପରେ ଅନେକ ନିର୍ଜନ ମୁହୂର୍ତ୍ତ, ଅନେକ ଗୀତ ଉଦ୍ୟାନରେ, କାଠଘର

ଅନେକ ଫଟୋ, ଅନେକ କବିତା । ଆଜି ମନେ ହେଉଛି, ସେଗୁଡ଼ାକ ଆଉ କିଛି ନୁହେଁ, ଅନେକ ବୋକାମି ।

ତନିମା—ବୋକାମି କାହିଁକି ? ମନର ମଣିଷକୁ ନେଇ ବାଞ୍ଛୁଥିଲ, ବେଶ୍ ଭଲ ତ !

ନୀହାରିକା—ହଁ ସବୁ ସ୍ୱପ୍ନ ଦେଇ ମନର ମଣିଷଟିଏ ଗଢ଼ିଥିଲି ।

ତନିମା—କିନ୍ତୁ ସେ ପ୍ରତିମା ଫିଙ୍ଗିଦେଲ କାହିଁକି ?

ନୀହାରିକା—କେବଳ ? ଆଇ. ଏ. ଏସ୍ ପାଇ ସେ ଯେତେବେଳେ ସର୍ଭିସରେ join କଲେନି, ବୁଝିପାରିଲି ଜୀବନରେ ତାଙ୍କର ambition ବୋଲି କିଛି ନାହିଁ ।

ତନିମା—ଏମିତି ମୁଁ କୋଉଠି ଶୁଣିନି ।

ନୀହାରିକା—ଖାଲି ସେତିକି ନୁହେଁ ସ୍ୱଜନ; ସେଇକଥା ନେଇ ସିଏ ମୋ ସାଙ୍ଗେ ଯେଉଁ ଯୁକ୍ତିତର୍କ କଲେନା···

ତନିମା—କ'ଣ ସେ ଯୁକ୍ତି ?

[ ନୀହାରିକା ଅଭିନୟ କରି ନିଜ ସ୍ୱାମୀର dialogue କହିଲା— ]

ନୀହାରିକା—"ସୁବିମଳ ଶ୍ରୀବାସ୍ତବ ଭଳି ଜଣେ scholar ପାଇଁ ଆଇ. ଏସ୍. ସର୍ଭିସର ମୂଲ୍ୟ ବିଶେଷ କିଛି ନୁହେଁ । ତା' ଅପେକ୍ଷା ଏଇ ଶାନ୍ତ, ସୁସ୍ଥ ଅଧ୍ୟାପନମୟ ଜୀବନ ବେଶ୍ ଭଲ । ଶିକ୍ଷାନୁଷ୍ଠାନର ପରିସର ଭିତରେ ମଣିଷ ତିଆରି କରିବ । ଆଗାମୀ ଯୁଗର ଯୁବସମାଜକୁ ଆଲୋକ ଦେଖାଇବ ।"

ତନିମା—ଯଦି ଏଇଆ ହୋଇଥାଏ, ସିଏ ତ କିଛି ଭୁଲ କରିନାହାନ୍ତି ।

ନୀହାରିକା—ନା, ସିଏ ଠିକ୍ କରିଛନ୍ତି । ଭୁଲ କରିଛି ମୁଁ । ସେଇ ଭୁଲଟାକୁ ସୁଧାରିନେବା ପାଇଁ ମିସେସ୍ ଶ୍ରୀବାସ୍ତବ' ହବାର ସବୁ ଗୌରବ ପୋଛି-ଦେଇ ମୁଁ ଆଜି ଆଉ ଥରେ ସାଜିଛି 'କୁମାରୀ ନୀହାରିକା' ।

ତନିମା—ଆଉ ସୁବିମଳ ?

ନୀହାରିକା—Divorce ପରେ ଯୋଉ scandal, ସିଏ କ'ଣ ଆଉ କଲେଜରେ ରହିପାରନ୍ତେ ?

( ଶେଯ ଉପରେ ଲେଟିପଡ଼ିଲା ନୀହାରିକା )

ଚଟିମା— ଚଳେ ଭୁଆଜେ ?

[ ଖଟ ବାଡ଼ କୁ ଧରି ମାଦ୍ବାରକାକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥିଲ ]

ମାଦ୍ବାରକା—ଚାକରିରୁ resign କଲେ । ବର୍ତ୍ତମାନ ସୁଦୂର 'ସୁନ୍ଦରଗଡ଼'ର ଆଦିବାସୀ ସ୍କୁଲର ମାଷ୍ଟର ।

( ହସି ହସି ଶେଯ ଉପରେ ଲେଟିପଡ଼ୁଛି )

ଚଟିମା—ଇସ୍ ତମେ କ'ଣ କଲ ?

ମାଦ୍ବାରକା—ଜବଦ୍ କରି ଦେଇଛୁ ।

( ପୁଣି ହସି ହସି ଲେଟିଯାଉଛି )

ଚଟିମା—( ମନରେ ଗଭୀର କଷ୍ଟ ଅନୁଭବ କରି ) ନା, ତା ହୋଇ ପାରେନା ।

ମାଦ୍ବାରକା ( ହସି ହସି ) କ'ଣ ହୋଇପାରେନା ?

ଚଟିମା—ତାଙ୍କୁ ମୁଁ ସେଇ ଆଦିବାସୀ ଅଞ୍ଚଳରେ ଏକା ଏକା ତପସ୍ୟା କରିବାକୁ ଦେବିନି କି ତୁମକୁ ଏଠି କୁମାରୀ ମାଦ୍ବାରକା ସାଙ୍ଗେ ଅଭିନୟ କରିବାକୁ ଦେବିନି ।

[ ମାଦ୍ବାରକା ସେଇଭଳି ହସୁଥିଲ । ଚଟିମା ଡ୍ରେସିଂ ଟେବୁଲ ପାଖରୁ ସିନ୍ଦୁର ଫରୁଆ ନେଇ ଆସିଛି ]

ମାଦ୍ବାରକା – ଖଜୁକ !

ଚଟିମା—'ଖଜୁକ' ବୋଲି ଯେବେ ଡାକୁଛ, ମୋ କଥା ମାନିବାକୁ ହବ । ମୋ ରାଣ, ଚୁପ୍ କରି ବୁହ ।

[ ଖଟ ଉପରେ ହସି ହସି ଲେଟି ଯାଉଥିବା ମାଦ୍ବାରକା ମନ୍ତ୍ରମୁଗ୍ଧ ଭଳି ଚୁପ୍ ହୋଇ ରହିଲ । ଚଟିମା ସିନ୍ଦୁର ଫରୁଆରୁ ସିନ୍ଦୁର ନେଇ ତା ଲଲାଟରେ ଓ ସୀମନ୍ତରେ ଫିନ୍ଧାଇ ଦେଲ । ତା' ପରେ ଚଟିମା ସିନ୍ଦୁର ଫରୁଆ ନେଇ ଡ୍ରେସିଂ ଟେବୁଲ ପାଖରେ ରଖିଛି ]

ନୀହାରିକା—( ଉଠିପଡ଼ି ଗମ୍ଭୀର ସ୍ୱରରେ ) ଏ କ'ଣ କଲ ସ୍ୱପନ ?

ତଟିନୀ—( ଡ୍ରେସିଂ ଟେବୁଲ ପାଖରୁ ) ଯାହା କଲେ ତୁମେ ଦୁନିଆରେ ମଥା ଟେକି ଚାଲିପାରିବ, ସେଇଆ କରୁଛି ।

ନୀହାରିକା ( ବ୍ୟସ୍ତ ହୋଇ ) କିନ୍ତୁ ତୁମେ ଜାଣନା, ଆଇନ ଅନୁସାରେ ଆମର ଛାଡ଼ପତ୍ର ହୋଇ ଯାଇଛି ।

ତଟିନୀ—ସ୍ୱାମୀ, ସ୍ତ୍ରୀର ସମ୍ପର୍କ କାଗଜ କଲମରେ କେବେ ଲେଖା ହୋଇ ନ ଥାଏ କିମ୍ବା କାଗଜ କଲମରେ କେବେ ତୁଟି ଯାଏନା ।

ନୀହାରିକା—ସ୍ୱପନ !

ତଟିନୀ—ହଁ, ରିକା ! କୁହ, ଏବେ ବି କ'ଣ ତୁମ ମନ ଆଇନାରେ ତାଙ୍କ ଛାଇଟା ଧରି ରଖିନ ? ସେ ଆଇନାଟା ଯଦି ଆଜି କୌଣସି କାରଣରୁ ଭାଙ୍ଗି ଯାଏ, ତମେ ସେଇ ଭଙ୍ଗା କାଚ ଗୁଡ଼ାକୁ ଧରି କାନ୍ଦିବନି ?

ନୀହାରିକା—ନା, ନା, ମୁଁ କାନ୍ଦିବିନି, ଆଦୌ କାନ୍ଦିବିନି, ମୋଟେ କାନ୍ଦିବିନି ।
( କହୁ କହୁ ନୀହାରିକା କାନ୍ଦି ପକାଇଲେ )

ତଟିନୀ—ଏଇତ ତୁମେ କାନ୍ଦୁଚ । କାନ୍ଦ, ଆହୁରି ଭଲକରି କାନ୍ଦ । ସେଇ ଲୁହରେ ଧୋଇଯାଉ ତୁମର ସବୁ ଗର୍ବ । ତମେ ଭୁଲିଯାଅ, ତମେ ପାଇଟଗ୍ରସ୍ତ ବଂଶର ଝିଅ ।

ନୀହାରିକା—ସ୍ୱପନ !

ତଟିନୀ—ହଁ, ରିକା ! ମୁଁ ତୁମକୁ ଭଲପାଏ ବୋଲି ଆଜି ଏକଥା କହୁଚି । ତୁମେ ମୋତେ ଭଲପାଅ ବୋଲି ମୁଁ ଏକଥା କହିପାରୁଚି । କୁହ ରିକା ! ଏଇ ଭଲ ପାଇବାର ଅଧିକାରରେ ମୁଁ ଆଜି ତୁମକୁ ଯଦି କିଛି କହେଁ, ମାନିବ ?

ନୀହାରିକା—କ'ଣ ସ୍ୱପନ ?

ତଟିନୀ—ତମ ବର ପାଖକୁ ତମେ ଚିଠି ଲେଖିବ ।

ନୀହାରିକା—ଚିଠି ! ( ଚମକି ପଡ଼ିଛି ନୀହାରିକା ) ନା, ନା ।

ତଟିନୀ—ନା, ତମେ ଲେଖିବ । ତମକୁ ଲେଖିବାକୁ ହବ ।

ନୀହାରିକା—ନା ସ୍ୱପନ ! ମୁଁ ନିଜକୁ ଏତେ ଛୋଟ କରି ପାରିବିନି ।

ତଟିନୀ—କାହିଁକି ? ଏଥିରେ ପାଇକଗ୍ରସ୍ତ ବଂଶର ଝିଅ ତ ଶ୍ରେଷ୍ଠ ହୋଇଯାଉନି । ଖାଲି ରହତଗ୍ରସ୍ତ ବଂଶର ବୋହୂ ଟିକେ ମୁଣ୍ଡ ନୁଆଁଇ ସ୍ୱାମୀର ପାଦଧୂଳି ମାଗିନେଉଚି । ସେଇ ତା'ର ଗର୍ବ, ସେଇ ତା'ର ଗୌରବ, ସେଇ ତା'ର ସବୁକିଛି ।

ନୀହାରିକା—ନା, ନା ସ୍ୱଜନ ! ତମେ ମୋତେ ବାଧ୍ୟ କରନା ।

ତଟିନୀ—ବେଶ୍, ତୁମେ ଯଦି ଅବାଧ୍ୟ ହୁଅ, ତା'ହେଲେ ମତେ ଆଉ ସ୍ୱଜନ ବୋଲି ଡାକିବନି । (ଚାଲି ଯାଉଥିଲେ)

ନୀହାରିକା—ଜୀବନରେ ସବୁକିଛି ମୁଁ ହରେଇଛି, ସ୍ୱଜନ ! ଭାବୁଥିଲି ତମରି ସ୍ନେହ ମମତା ଭିତରେ ବଞ୍ଚିରହିବି । ଶେଷରେ ତମେ ବି ମତେ ପର କରିଦଉଚ ? ନା ସ୍ୱଜନ, ନା !

ତଟିନୀ—ବେଶ୍, ତା'ହେଲେ ମୋ କଥା ମାନ । (ଡ୍ରେସିଂ ଟେବୁଲରୁ କାଗଜ କଲମ ଆଣି ଧରାଇଦେଲେ) ଏଇ ନିଅ କାଗଜ ଆଉ କଲମ । ମୁଁ କବାଟ ବନ୍ଦକରି ଯାଉଚି । (ତଟିନୀ ଚାଲିଗଲେ)

[ ନିମାଇଁ ଗୋସାଇଁଙ୍କର ଗୀତ ଆରମ୍ଭ ହୋଇଛି ପୃଷ୍ଠଭୂମିରୁ । ଗୀତର ମର୍ମ ରାଧାରାଣୀଙ୍କର କୃଷ୍ଣଙ୍କ ନିକଟକୁ ପ୍ରେମପତ୍ର ଲେଖିବା । ନୀହାରିକା ଶୋଇବାଘରେ ବସି ଚିଠି ଲେଖିବା ଆରମ୍ଭ କରିଛି । ଆଉ ଗୀତର ତାଳେ ତାଳେ ତା'ର ମନ ଆନ୍ଦୋଳିତ ହେଉଛି । ସେ ସ୍ଥିର ହୋଇ ଗୋଟିଏ ଜାଗାରେ ବସିପାରୁନି । ଖଟ ଉପରୁ ଚୌକି ଉପରକୁ, ଚୌକି ଉପରୁ ଟେବୁଲ ପାଖକୁ, ସେଠୁ ଝରକା ପାଖକୁ, ସେଠାରୁ ଆଇନା ପାଖକୁ ଯାଇ ବିଭିନ୍ନ ଭଙ୍ଗୀରେ ବସି ଶୋଇ ଚିଠି ଲେଖିବାର ଉପକ୍ରମ କରୁଛି । ଅତୀତ କଲେଜ ଜୀବନର ଭଲ ପାଇବାର କିଛି କିଛି ଅସଂଲଗ୍ନ ପ୍ରଳାପ ଭାସି ଆସୁଥିଲା । ନୀହାରିକା

ବାରମ୍ବାର ଖଣ୍ଡେ ଖଣ୍ଡେ କାଗଜ ଧରି ଚିଠି
ଲେଖା ଆରମ୍ଭ କରୁଥିଲା ଓ ମନକୁ ନ ଆସିବାରୁ
ତାକୁ ହାତରେ ମୋଡ଼ି ଫିଙ୍ଗି ଦଉଥିଲା ।
ଏହିପରି ଅନେକ ସମୟ ଗଲାପରେ, ବିଛଣା
ଉପରେ ଶୋଇପଡ଼ି ତକିଆଟାକୁ ଗୁଡ଼ି ତଳେ
ଗୁଞ୍ଜିଦେଇ ଚିଠି ଲେଖିବାର ଶେଷ ଚେଷ୍ଟା କଲା ।
ଶୋଇବା ଘରର ଆଲୁଅ ଆସ୍ତେ ଆସ୍ତେ ମଳିନ
ପଡ଼ି ଏକାବେଳକେ ଲିଭିଗଲା । ସକାଳର
ଆଲୋକରେ ଦେଖାଗଲା ଯେ ବୈଠକଖାନାରେ
ତଟିନୀ ଓ ନମାଇଁ କଥାବାର୍ତ୍ତା କରୁଥିଲେ ]

ତଟିନୀ—ଗୋସେଇଁ, ଏ ଚିଠିଟା ନେଇ ଟିକେ ଡାକଘରେ ପକେଇଦବ ?

( ଚିଠି ବଢ଼ାଇଦେଲା )

ନମାଇଁ—( ଚିଠିଟାକୁ ହାତରେ ଧରି ) ତୋର କୋଉ କଥାଟା ମୁଁ ନ ମାନୁଛି, ମା !

ତଟିନୀ—ହେଲେ ଏ ହେଉଚି ଲୁଚ୍ଚୋରି କାମ; କେହି ଯେମିତି ନ ଜାଣନ୍ତି ।

ନମାଇଁ—ଲୁଚ୍ଚୋରି !

ତଟିନୀ—ହଁ, କାହାକୁ କହିବନି ।

ନମାଇଁ—କାହାର ଚିଠି ଇଏ ମା ?

ତଟିନୀ—ସେ ସବୁ ପରେ ଜାଣିବ ।

( ତନ୍ମୟ ପ୍ରବେଶ କରି ଖୁବ୍ ଗମ୍ଭୀର ଗଳାରେ କହିଲା )

ତନ୍ମୟ—ମୋର କଣ୍ଟୁ ସେ'ଟା ବର୍ତ୍ତମାନ ଜାଣିବା ଦରକାର ।

ନମାଇଁ—ଏଇ ତ, ତୋର ନୀଳମଣି ଅସିଗଲାଣି; ଆଉ ମୋ ହାତରେ ପଠେଇବା କ'ଣ ଦରକାର । ନେ ବାବା, ନେ ।

['ତନ୍ମୟ' ହାତକୁ ଚିଠି ବଢ଼େଇଦେଲେ ନମାଇଁ ।
ତନ୍ମୟ ଚିଠି ଉପରର ଠିକଣା ପଢ଼ି ଆଶ୍ଚର୍ଯ୍ୟ
ହୋଇଗଲା ]

ତଟିନୀ—କ'ଣ ! ଠିକଣାଟା ପଢ଼ି ଚୂପ୍ ହୋଇଗଲ ଯେ ?

ଚନ୍ଦ୍ରସ୍ୱ—ମତେ ଚୂପ୍ କରି ଦେଲାଭଳି ଅନେକ ଧାମ ତୁମେ କରିଛ ।

ତଟିନୀ—ବେଶ୍, ତା'ହେଲେ ଆଜ ଆଉ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଚିଠିଟା ବି ଖୋଲି ପଢ଼ିପାର । ତେବେ ଉଭୁଣୀର ପ୍ରେମପତ୍ର ଖୁବ ପଢ଼ିବାଟା···

ଚନ୍ଦ୍ରସ୍ୱ—ତଟିନୀ !

ତଟିନୀ—ଯାଅ ! ଚିଠି ଖଣ୍ଡିକ ଡାକରେ ପକେଇ ଦେଇ ଆସ ।

ଚନ୍ଦ୍ରସ୍ୱ—ନୀହାରିକା କେଜେ ଲେଖିଛି ?

ତଟିନୀ—କହିଲି ତ ନିଜେ ଖୋଲି ପଢ଼ିପାର !

ଚନ୍ଦ୍ରସ୍ୱ—ସେମାନେ ପରସ୍ପରକୁ divorce କରିଛନ୍ତି ।

ତଟିନୀ—ସବୁ ଜାଣେ ।

ଚନ୍ଦ୍ରସ୍ୱ—ମୁଁ କିନ୍ତୁ କିଛି ଜାଣିପାରୁନି, କ'ଣ ହେଲା ?

ତଟିନୀ—ବେଶୀ କିଛି ଜାଣିବା ଦରକାର ନାହିଁ । ଖାଲି ଏତିକି ଜାଣିଥାଅ, ତମ ଗେହ୍ଲା ଉଭୁଣୀ ନିଜେ ସୁବିମଳ ପାଖକୁ ଏଇ ଚିଠି ଲେଖିଛି ।

ଚନ୍ଦ୍ରସ୍ୱ—ନୀହାରିକା ଯୋଉ ଜିଦ୍‌ଖୋର ସେ ପୁଣି ସୁବିମଳକୁ ନିଜେ···

ତଟିନୀ—ଯଦି ବିଶ୍ୱାସ ନ ହେଉଛି ଆସ ଦେଖିବ, ତମ ଗେହ୍ଲା ଉଭୁଣୀ ଶୋଇଛି । ଚିଠି ଲେଖିବାକୁ ଯାଇ ହାଣ୍ଡି ଗିଡ଼ି ଅନିଦ୍ରା ।

[ ତା ପରେ ତଟିନୀ ଚନ୍ଦ୍ରସ୍ୱକୁ ଟାଣିନେଉଛି ଶୋଇବାଘରକୁ । ଶୋଇବା ଘରେ ଦେଖାଗଲା କ୍ଳାନ୍ତ ନୀହାରିକା ବିଛଣା ଉପରେ ଶୋଇଯାଇଛି ପେଟତଳେ ତକିଆ ରଖି । ତା' ସ୍ୱରଗତେ ଅଜସ୍ର ଅଧା ଲେଖା ଚିଠି । ସେ ଚିଠିରୁ ଖଣ୍ଡେ ଖଣ୍ଡେ ଉଠେଇ ତଟିନୀ ଚନ୍ଦ୍ରସ୍ୱ ଆଗରେ ଦୁହିଁ ଦୁହିଁ ବିଦ୍ରୂପକରି ପଢ଼ିଛି । ତା'ପରେ ତଟିନୀ କହୁଛି ]

ତଟିନୀ—କ'ଣ ଏଥର ବିଶ୍ୱାସ ହେଲା ? ଦେଖ ତା' ମୁହଁରେ ସିନ୍ଦୂର ।

ଚନ୍ଦ୍ରସ୍ୱ—ତମ ଋଣ ମୁଁ ସୁଝିପାରିବିନି, ତଟିନୀ ! ତମ ଋଣ ମୁଁ ସୁଝିପାରିବିନି । ଯାଏ ମୁଁ ଚିଠିଟା ପକେଇଦେଇ ଆସେ ।

[ ଦୌଡ଼ିଗଲ ଚଠି ପକାଇବା ଉଦ୍ଦେଶ୍ୟରେ ।
ବୈଠକଖାନାରେ ଦେଖା ହେଲ ଗୁମାସ୍ତାଙ୍କ
ସାଙ୍ଗେ । ସ୍ବାଡ଼େ ଚଟିମା ଶୋଇବା ଘରେ ଗୋଟା
ଗୋଟା ଚଠି ସାଉଁଟି ପଢ଼ୁଛୁ ଓ ହସୁଛୁ ]

ଗୁମାସ୍ତା—ସାନବାବୁ, ଇମିତ ତରତରରେ କୁଆଡ଼େ ?

ଚନ୍ଦ୍ରସ୍ବ—ଗୋଟେ ଚଠି ପକେଇବାକୁ ଯାଉଛୁ ।

ଗୁମାସ୍ତା—ଚଠିଟାଏ ତ ? ଏମିତ ତରତର କାହିଁକ ?

ଚନ୍ଦ୍ରସ୍ବ—ତମେ ଜାଣିନ ଗୁମାସ୍ତାଏ, ଭଉଜ ତା' ବରପାଖକୁ ଚଠି ଲେଖିଛୁ ।

ଗୁମାସ୍ତା—ହେଁ.ନ୍ତ ! ଆମ ଦେଈ ଫେରେ ଜୋଉଁବାବୁଙ୍କ ପାଖକୁ··ତାଙ୍କର ପଗ୍‌
ଏତେ ସବୁ ମନାନ୍ତର ହେଇଥିଲ ?

ଚନ୍ଦ୍ରସ୍ବ—ନା, ସେ ଉଙ୍ଗାମନ ଏବେ ଯୋଡ଼ହୋଇଗଲଣି । ମାହାଉଜ ଏବେ
ସିନ୍ଦୁର ପିନ୍ଧିବା ଆରମ୍ଭ କଶଦେଇଛୁ ।

ଗୁମାସ୍ତା—ଏଁ ! ସତେ ! ଶଷ୍ଟ କଟିଗଲ, ଋଷ୍ଟ କଟିଗଲ । ସବୁ ଏଇ ବୋହୁ
ସାଆନ୍ତାଣୀଙ୍କ ସୁକୃତରୁ । ନଇଲେ ଏମନ୍ତ ନୋହିଲ କଥା ହୁଅନ୍ତା
କୋଉଠୁ ? ସାକ୍ଷାତ୍ ମା ଲକ୍ଷ୍ମୀ ପ୍ରବେଶ କଶଛନ୍ତି । ଏଥର ଦେଖ, ଧନ,
ଜନ, ଗୋପ, ଲକ୍ଷ୍ମୀ ସବୁ ମାଡ଼ିଯିବେ !

ଚନ୍ଦ୍ରସ୍ବ—ତମେ ଥାଅ, ମୁଁ ଚଠି ପକେଇଦେଇ ଆସେ ।

ଗୁମାସ୍ତା—ହଁ, ତା' ସାଙ୍ଗରେ ବଡ଼ବାବୁଙ୍କୁ ଆଉ ଏକ ଚଠି ପକେଇଦଅ, ସେ ଏଇ
ଖବରଟା ଶୁଣିଲେ ନା, ତାଙ୍କ ଗ୍ଲଡ ଖୁସିରେ କୁଣ୍ଡେ ମୋଟ ହେଇ ଯିବ ।
ଏତେ ପୂଜା ପୂଜି, ଜିସ୍ବାକର୍ମ କଶ ଜାତକ ଦେଖେଇ ଯଜ୍ଞ କଶ ଯୋଉ
କାମ ହଉ ନ ଥିଲ ସେଇଟା ଛାଁକୁ ଛାଁ ହଉଚ । ସବୁ ମା ଲକ୍ଷ୍ମୀଙ୍କ ଦୟାରୁ,
ସବୁ ମା ଲକ୍ଷ୍ମୀଙ୍କ ଦୟାରୁ ।

[ ଚନ୍ଦ୍ରସ୍ବ ଗ୍ଲଲଗଲ । ଗୁମାସ୍ତା ବସି ପାନ ଖଙ୍ଗିବାକୁ
ଆରମ୍ଭ କଲେ । ଶୋଇବାଘରେ ଦେଖାଗଲ, ଚଟିମା
ଫଲଟିଏ ହାତରେ ଧର ମାହାଉଜ କାନରେ ଗୁଞ୍ଜି
ତାକୁ ଉଠାଇବାକୁ ଚେଷ୍ଟା କରୁଛୁ ]

ମାହାରକା—ଓଃ ହୋ, ମତେ କ'ଣ ଟିକେ ଶୋଇବାକୁ ଦବନି ?
ଚଟିମା—ଏ କଥା ଶୁଣ୍ଡା ରଖିଥାଅ, ସୁବ୍ରମଲ ଆସିଲେ ତାକୁ କହିବ ।
ମାହାରକା—ଧେତ୍ତୁ ! ( ପୁଣି ଶୋଇପଡ଼ୁଥିଲା )
ଚଟିମା—ଆରେ, ଶୋଇପଡ଼ୁଚ କ'ଣ ମ ? ଗାଁରୁ ପସ୍ଵ କଏ ଲୋକ ଆସିଚନ୍ତି ।
ମାହାରକା—ଗାଆଁରୁ ? କଏ ?
ଚଟିମା—ଯାଉନା ଦେଖିବ ।

[ ମାହାରକା ଉଠି ଚାଲିଯାଉଥିଲା । ଚଟିମା ତାକୁ ଧରି ଅଟକାଇ ଦେଇ କହିଲା ]

ଅରେ ବୁଢ଼ା, ଏମିତି କ'ଣ ଯାଉଚ ? ( ଓଢ଼ଣାଟା ଟାଣିଦେଇ କହିଲା )
ଏଥର ଯାଅ । ( ମାହାରକା ଓ ଇଂ ରୁମକୁ ଗଲା )
ମାହାରକା—ଆରେ, ଗୁମାସ୍ତାଏ ! ତୁମେ ଏତେବେଳେ କୁଆଡ଼େ ?
ଗୁମାସ୍ତା—ନେଜ ପଡ଼ଜ ହୋଇଗଲା ମା, ନେଜ ପଡ଼ଜ ହୋଇଗଲା । ଏଇ ବେଶ ଦେଖିବ ବୋଲି...ଆହା-ହା କି ସୁନ୍ଦର ମାନୁଚ ଶାଢ଼ୀ, ସିନ୍ଦୂର, ଓଢ଼ଣା । ବୁଢ଼ା ସାଆନ୍ତେ ଦେଖିଲେ ନା...
ମାହାରକା—ଆଉ ଆଉ, ତମର ଯୋଉ କଥା !
ଗୁମାସ୍ତା—ହଁ ଦେଇ, ଏଥର ତୁମେ ଶାଶୁଘରକୁ ଗଲାବେଳେ ମୁଁ ତୁମ ସାଙ୍ଗରେ ଯିବ; ଆଉ ସୁପରଫାଇନ୍ ଧୋତି ଚଦର ନ ହେଲେ ମୁଁ ସେଠୁ ଅସୁନି ।
ମାହାରକା—ମୁଁ ଶାଶୁଘରକୁ ଯାଉଚ ବୋଲି ତମକୁ କଏ କହିଲା ?
ଗୁମାସ୍ତା—ତମ ମୁହଁ କହୁଚ, ତମ ବେଶ କହୁଚ, ତମ ଚାଲି କହୁଚ ।
ମାହାରକା—ବୁଝିଲି; ସାଉଜଙ୍କର ଏଇ ଯେତେ ସବୁ ନାଟ । ଘରେ ଅସି ଗୋଡ଼ ଦେଲେ କି ନାହିଁ, ଯେତେ ଗୁମର କଥା ସବୁ କହିଦେଇସାରିଲେଣି ।
ଗୁମାସ୍ତା—ନାହିଁ, ସିଏ କାହିଁ କହିବେ ?
ମାହାରକା—ହଉ; ତମେ ସତ କହୁଚ କି, ସିଏ ସତ କହୁଚନ୍ତି ମୁଁ ପଚାରି ବୁଝୁଚି ଯେ । ସାଉଜ...ସାଉଜ ! ( ଡାକ ଡାକ ଚାଲିଯାଉଥିଲା )
ଗୁମାସ୍ତା—( ପଛରୁ ଡାକ ପକେଇଚନ୍ତି ) ଆରେ ଶୁଣ, ଶୁଣ, ଦେଇ । ଚାଲିଯାଉଚ କୁଆଡ଼େ ?
ମାହାରକା—କ'ଣ ?

ଗୁମାସ୍ତା—ସାଆନ୍ତେ କ'ଣ ଦେଇଚନ୍ତି କହ । ଏଇ ବୋହୂ ସାଆନ୍ତାଣୀଙ୍କ ଗହଣା ।
[ ଗର୍ଣ୍ଣିଲରୁ ଗୋଟିଏ ବାକ୍ସ କାଢ଼ି ବଢ଼େଇଦେଲେ ]

ମାହାରକା—ବାପା ଦେଇଚନ୍ତି ? ଏସବୁ କେବେ ଗଢ଼ା ହେଲା ?

ଗୁମାସ୍ତା—ଏସବୁ କ'ଣ ଆଜକାର ମା, ଏସବୁ ତମ ମା'ଙ୍କର । ତାଙ୍କୁ ପୁଣି ଦେଇଯାଇଥିଲେ ତାଙ୍କ 'ଶାଶୁ ସାଆନ୍ତାଣୀ' ।

ମାହାରକା—ଏସବୁ କେଉଁ କାଳର ପୁରୁଣା design ହୋଇଥିବ; ସ୍ୱଜ ପିନ୍ଧିଲେ ଲୋକ କ'ଣ କହିବେ ?

ଗୁମାସ୍ତା—ପୁରୁଣା ହେଲେ ହେଲା; ନୂଆ ଢଙ୍ଗର ଗହଣା ଏବେ ଯାହାସବୁ ବାହାରୁଚି ଦେଖିଲେ ଜାଣିବ ସବୁ ସେଇ ପୁରୁଣା ଜିନିଷ, ଖାଲି ଟିକେ ଏପଟ ସେପଟ । ବୁଢ଼ା ସାଆନ୍ତେ ଆସନ୍ତୁ; ତାଙ୍କୁ କହି ଏଇଠି ଆଉ-ଗୋଟେ ନୂଆ ସେଟ୍ ଗଢ଼େଇଦେବେ ଆଉ ।

ମାହାରକା—ବାପା କେବେ ଆସିବେ ?

ଗୁମାସ୍ତା—ସେଠି ତ କାହିଁରେ କେତେ କାମ ଲାଗିଚି । ବୋହୂ ସାଆନ୍ତାଣୀ ଗାଁକୁ ଯିବେ ବୋଲି ଜଉତିଷ ଡାକି ଛଅ ବାର ଗଣା ହୋଇ ଦିନ ନିର୍ଦ୍ଧାର-ହୋଇଚି ।

ମାହାରକା—ଆଉ କେଇଦିନ ରହିଲା ?

ଗୁମାସ୍ତା—( ଆଙ୍ଗୁଠି ଗଣି ଗଣି ) ଶୁକ୍ଳପକ୍ଷ ପଞ୍ଚମୀ; ହେଲେ ଆଉ ସାତଟା ଦିନ ରହିଲା । କାମ ସବୁ ଛୁଣ୍ଡି ବ କେମିତି ଖାଲି ସେଇକଥା ଭାବୁଚି ।

ମାହାରକା—କ'ଣ ଏତେ କାମ ଯେ ?

ଗୁମାସ୍ତା—କ'ଣ କାମ ? ଗଲେ ବୁଝନ୍ତୁ । ଘରସବୁ ଚୂନ ଧଉଳା ହେବ । ପଲଙ୍କ ପାଇଁ ଗଦି, ତକିଆ ସବୁ ତିଆର ହବ । ପାଲିଙ୍କି ସୁଆସ୍ତ ସବୁ ରଙ୍ଗ ଦିଆହବ । ତା'ପରେ କୁଣିଆ, ମଇଦା, ଘିଅ ବେସର, ଗଜ ଅଇଲ, ପୁରୋହିତ, ବାଜାବାଲା, ବାଣବାଲା, ବାରିକ, ବାରିକାଣୀ । ଓଃ ମଣିଷ ବେଦମ ହୋଇଗଲାଣି । ବୁଢ଼ା ସାଆନ୍ତଙ୍କର କଡ଼ା ତାଗିଦ୍ । ତାଙ୍କ ବାହାଘର ଯେମିତି ଧୂମ୍‌ଧାମ୍‌ରେ ହୋଇଥିଲା ପୁଅ ସାଆନ୍ତଙ୍କ ବାହାଘର ଆଠ ଠିକ୍ ସେମିତି ହବ ।

ମାଧୁରିକା—ସେମିତ ନୁହେଁ, ତାଠାରୁ ବେଶୀ । ବାପାଙ୍କ ବେଳକୁ ଯିନା ଜୋଡ଼ ନାଚଗୀ ଅଭ ଚେଲିଂ ବାଇଦରେ କାମ ହଉଥିଲା ଏଣିକି ବ୍ୟାଣ୍ଡ୍ ପାର୍ଟି ନବାକୁ ପଡ଼ିବ ।

ଅନ୍ଧାର

---

## ଦ୍ୱିତୀୟ ଦୃଶ୍ୟ

[ ସମୟ ସକାଳ । ତନ୍ମୟ ବୈଠକଖାନାରେ ବସି ଖଣ୍ଡିଏ ଚିଠି ପଢ଼ୁଛି । ପାଖରେ ବସିଛନ୍ତି ତା'ର ସାଙ୍ଗମାନେ । ଚିଠିର ଶେଷ ଅଂଶ ପଢ଼ି ତନ୍ମୟର ମୁଣ୍ଡ ଗରମ ହୋଇଯାଇଛି । ବିରକ୍ତିରେ ସେ ଚିଠିଟାକୁ ଫୋପାଡ଼ିଦେଉଛି ସାଙ୍ଗମାନଙ୍କ ଆଡ଼କୁ ]

ତନ୍ମୟ—( ରାଗରେ ) ହୁଁ, ବ୍ୟାଣ୍ଡ ପାର୍ଟିଟାଏ ଯୋଗାଡ଼ କରିବ ।

ଶିଶିର—କ'ଣ ହେଇଚ କରେ ?

ତନ୍ମୟ—ପଢ଼ି ଦେଖ ବାପା କ'ଣ ଲେଖିଚନ୍ତି ।

ଅନୁପମ—କ'ଣ ଲେଖିଚନ୍ତି ?

ତନ୍ମୟ—ଲେଖିଚନ୍ତି, ବାଣ, ରୋଶଣି ସାଙ୍ଗରେ କଟକରୁ ଗୋଟେ ଭଲ ବ୍ୟାଣ୍ଡ ପାର୍ଟି ଯୋଗାଡ଼ କରିବୁ ।

ପ୍ରଶାନ୍ତ—ଭଲକଥା । ଆଜକାଲି ବାହାଘର ପ୍ରୋସେସନରେ ଆମ ଦେଶୀ ବାଜା ସାଙ୍ଗରେ ବ୍ୟାଣ୍ଡପାର୍ଟିଟାଏ ନ ହେଲେ ଚଳୁନି ।

ଶିଶିର—ଠିକ୍ କହୁଚୁ ଭାଇ, ବ୍ୟାଣ୍ଡପାର୍ଟିଟା ନ ହେଲେ ଜମିବନି । ବଢ଼ିଆ ଗୋଟାଏ ଫିଲ୍ମ ଗୀତ ଲଗେଇ...

[ କୌଣସି ଗୋଟେ ଗୀତର ସ୍ୱର ମୁହଁରେ ଧରି ହାତରେ କ୍ଲୋରେନେଟ୍ ବଜାଇବାର ଅଭିନୟ କରି ନାଚିବାକୁ ଆରମ୍ଭ କରିଦେଲା । ଅନ୍ୟ ଦୁ'ଜଣ ମଧ୍ୟ ତା ସହିତ ଯୋଗ ଦେଲେ ]

ଚିନ୍ମୟ—( ବିରକ୍ତ ହୋଇ ) ତମେମାନେ ଖାଲି ନାଚ । ଆଉ ମୁଁ ଜଳପୋଡ଼ି ମରେ ।

ଅବନୀ—ସମସ୍ତଙ୍କ ଜୀବନରେ ଥରେ ଇମିତି ଜଳପୋଡ଼ି ମରିବାର ଲଗ୍ନଟାଏ ଆସେ ।

ପ୍ରଶାନ୍ତ—ଆଉ ଜୀବନ ର ସେଇ ମୁହୂର୍ତ୍ତଟା କି ମଧୁର, କି ରୋମାଞ୍ଚକର !

ଚିନ୍ମୟ – ବି ସିରିଅସ୍, ସବୁବେଳେ ବାଜେ କଥା ଶୁଣିବାକୁ ଭଲ ଲାଗେନା ।

ଶିଶିର—ଏକ୍‌ଜାକ୍‌ଟଲି, ଏଇ ସମୟରେ କୌଣସି ବାଜେକଥା ଶୁଣିବାକୁ ଭଲ ଲାଗେନା ।

ଅବନୀ—ଆଗରୁ ଯୋଉ କଥାଗୁଡ଼ା ନିହାତି ଦରକାରୀ ବୋଲି ମନେ ହୁଉଥାଏ, ଏଇ ମୁହୂର୍ତ୍ତ ଆସିଲେ ସେଗୁଡ଼ାକ ହଠାତ୍ ବାଜେ କଥାରେ ପରିଣତ ହୋଇଯାଏ···ମୋର ଏଇଟା ବ୍ୟକ୍ତିଗତ ଅନୁଭୂତି ।

ଚିନ୍ମୟ—ତମେମାନେ ମତେ ଏଇସବୁ ଅନୁଭୂତି ଶୁଣେଇବ, ନା ସାହାଯ୍ୟ କରିବ ?

ପ୍ରଶାନ୍ତ—ଅନ୍ୟକୁ ସାହାଯ୍ୟ କରିବା ଆମର ଏକମାତ୍ର ଲକ୍ଷ୍ୟ ।

ଶିଶିର—ଏକମାତ୍ର ଆଦର୍ଶ···

ଅବନୀ—ଖାଲି ଜାଣିବା ଦରକାର, କେଉଁଠି, କେତେବେଳେ କାହାର ଦରକାର; ମାନେ ସାହାଯ୍ୟ ।

ଚିନ୍ମୟ—ବାପା ଚିଠି ଦେଇଚନ୍ତି, ପଢ଼ିକରି ଦେଖ ।

ପ୍ରଶାନ୍ତ—ଓ, ମଉସା ଦେଇଚନ୍ତି ? ଆମ କଥା ସବୁ ଲେଖିଚନ୍ତି ?

ଶିଶିର—ନିଶ୍ଚୟ ଲେଖିଥିବେ । ( ଚିଠିଟା ହାତରେ ନେଇ ) ପଢ଼ିଲି ।

( ଅବନୀ ହାତକୁ ଚିଠିଟା ବଢ଼େଇ ଦେଲା )

ଅବନୀ—( ନିସ୍ତାର ସହିତ ଚିଠି ପଢ଼ିବାକୁ ଆରମ୍ଭ କଲା )

"ବାଟମଙ୍ଗଳାଙ୍କ କୃପାରୁ ଆମ୍ଭେ କୁଶଳରେ ଅଛୁ । ମା ଭଟ୍ଟାରିକାଙ୍କ ପ୍ରସାଦରୁ ତୁମ୍ଭେମାନେ ସର୍ବଶୁଭରେ ଥିବ ।

ପ୍ରଶାନ୍ତ—( ଅବନୀ ହାତରୁ ଚିଠି ଟାଣିନେଇ ପଢ଼ିବାକୁ ଆରମ୍ଭ କଲା ) 'ପୁନଶ୍ଚ, ବୋହୂ କେମିତି ଅଛି ? ତା'ର ଯେମିତି କିଛି ଅସୁବିଧା ନ ହୁଏ ।

ଶିଶିର—( ପ୍ରଶାନ୍ତ ହାତରୁ ଚିଠି ଟାଣିନେଇ ପଢ଼ିଲା ) ବାବା ଅମରେଶ୍ୱରଙ୍କ ଆଶୀର୍ବାଦରୁ ବର୍ଷ ଶେଷରେ ଶୀଘ୍ର ନାତିଟିଏ କି ନାତୁଣୀଟିଏ ଦେଖିଲେ ମୁଁ ଶାନ୍ତିରେ ମରିବି ।" ଇତି

ତୋର

ବାପା—

( ସମସ୍ତେ ଜୋରରେ ହସିବାକୁ ଲାଗିଲେ )

ତନ୍ମୟ—( ଚିତ୍କାର କରି ) ମୁଁ ଜାଣେ, ତମେମାନେ ମୋ ପାଇଁ କିଛି କରିବନି । ଖାଲି ନାଚ, ଗୀତ । ଏତେ କଣ କହୁଲି, କେବେ କି ମୋତେ ବିଶ୍ୱାସ କଲନି ? ଆଜି ତମମାନଙ୍କୁ କିଛି କହିବିନି ।

ଅବନୀ – ତୁ ନ କହିଲେ ବି ବନ୍ଧୁପ୍ରତି ଆମର ଯୋଉ କର୍ତ୍ତବ୍ୟଟା ଅଛି, ସେଟା ଆମେ ନଷ୍ଟସ୍ୱ କରିବୁ ନା ! ଆଉ···

ତନ୍ମୟ—କ'ଣ ଆଉ କରିବ ? ଦିନ, ବାର, ଲଗ୍ନ ଠିକ୍ କରି ବାପା ବୋହୂକୁ ଘରକୁ ନବାକୁ ବସିଲେଣି ।

ପ୍ରଶାନ୍ତ—ପାଇକରାୟ ବଂଶର ବୋହୂ ଘରକୁ ଯିବନି ଆଉ କ'ଣ ସବୁଦିନେ ଏଇଠି ବିଦେଶରେ ପଡ଼ିଥିବ ?

ଶିଶିର—ଅରେ ସିଏ କ'ଣ ସେକଥା କହୁଛି ? ତାର ଚିନ୍ତା ହେଲାଣି, ସିଏ ଗ୍ରାମ୍ଲଗଲେ ଇଏ ଚଳିବେ କେମିତି ? ସାଧୁଆ ରେଷ୍ଟୋରାଇଘର ତ ଆଉ ଚୁଟିବ ନାହିଁ ।

ତନ୍ମୟ—( ଶରଜ୍ଜରେ ମୁଁ ହୋଟେଲରେ ଖାଏ କି ଉପାସ ରହେ, ତମମାନଙ୍କର ଏବିବା କିଛି ଦରକାର ନାହିଁ । ତମେମାନେ ଗଲ ଏଠୁ, ତମେମାନେ ଏଠୁ ଗଲ···

ଅବନୀ—କୁଆଡ଼େ ?

ତନ୍ମୟ—ଆଡ୍ଡା ଦବାକୁ ଢେର ଜାଗା ଅଛି । ଗ୍ଲଲ···

( ସମସ୍ତଙ୍କୁ ଧକ୍କା ମାରି ଠେଲି ଠେଲି ନେଇଥିଲା । )

ପ୍ରଶାନ୍ତ—ମୋର ଝିଲେ ଗୁରୁଜନଙ୍କ ସାଥିରେ କଥା ଥିଲା ।

ଚନ୍ଦ୍ରସ୍ୱ—ଚୁପ୍ ( ଠେଲିଦେଇ ବାହାରକୁ ଘୁଞ୍ଚିଗଲା )

( କିଛିକ୍ଷଣ ପରେ ଟ୍ରେ'ରେ ଗ୍ଲାସ ନେଇ ଆସିଛି ସାଧୁଆ )

ସାଧୁଆ—( କାହାକୁ ନ ଦେଖି ) ମା ଚା' ପଠେଇଲେ···ସବୁ କୁଆଡ଼େ ଗଲେଣି !
( ବାହାରକୁ ଚାହିଁ ) ପ୍ରଶାନ୍ତବାବୁ, ଶିଶିରବାବୁ, ଅବନୀବାବୁ··· ! କାହିଁ, କାହାର ପାଟି ଶୁଭୁନ ! ଏ ଚାହାଗୁଡ଼ା ସବୁ ନଷ୍ଟ ହେଲ ନା ! ବଜାରରେ ତ ଦୁଧ ମିଳୁନ, ଆଉ ଚିନି ଦାମ ଯାହା ହେଲଣି । କେତେ ଦୁଧ ଚିନି ପଡ଼ି ଚାହାଟା···( ଚୁ···ଚୁ···କଲା ) ହଉ···

[ ଗୋଟିଏ କପ୍ ଚାହା ନେଇ ଗୋଟାଏ ସୋଫାରେ ବସିଲା । 'ପ୍ରଶାନ୍ତବାବୁ' ନାଁ ଉଚ୍ଚାରଣ କରି ଚାହାଟା ପିଇଦେଲା । ଆଉ ଗୋଟିଏ କପ୍ ନେଇ ଆଉ ଗୋଟିଏ ସୋଫାରେ ବସି 'ଶିଶିରବାବୁ' ନାଁ ଉଚ୍ଚାରଣ କରି ଚାହାଟା ପିଇଦେଲା । ଏମିତି ଭିନ୍ନ ଭିନ୍ନ ସୋଫାରେ ବସି ଭିନ୍ନ ଭିନ୍ନ ନାଁ ଉଚ୍ଚାରଣ କରି ସବୁ ଚାହା ପିଇଦେଲା । ସବା ଶେଷ କପ୍ ଖାଉଥିବାବେଳେ ଭିତରୁ ଡାକ ଶୁଭିଲା "ସାଧୁଆ" । ଗ୍ଲାନଆରେ ଅଧେ ଚାହା ତାର ଜାମାପଟାରେ ଢାଳି ହୋଇଗଲା । "ଆଜ୍ଞା, ଯାଉଛି" କହି ବାକିଟା ଖାଲି କପ୍ 'ଟ୍ରେ'ରେ ଧରି ଘରକୁ ପଶିଗଲା ।

ବାହାରୁ ଆସିଛି ସୁକମଲ । ଦେହରେ ଖଦଡ଼ ଧୋତି, ପଞ୍ଜାବୀ; କାନ୍ଧରେ ଶାନ୍ତି-ନିକେତନର ଲମ୍ବା ଝୁଲି । ଭିତରକୁ ଅତି ସନ୍ତର୍ପଣରେ ପ୍ରବେଶ କଲା ସୁକମଲ । ଚାରି-ଆଡ଼କୁ ଚାହିଁ ଦେଖିଲା କେହି କାହାନ୍ତି ।

ତାହାଙ୍କୁ ଡାକିବାକୁ ଯାଇ ମନେହେଲା ତା'ର ତଣ୍ଟି ଯେମିତି ଶୁଖିଯାଉଛି । ସେ ସ୍ତବ୍ଧ ହୋଇ ଗୋଟିଏ ସୋଫା ଉପରେ ବସିଗଲା । ଲକ୍ଷ୍ୟକଲା, ନିକଟସ୍ଥ ଗ୍ରେଟ 'ଟି'ପଏ ଉପରେ ରଖା ହୋଇଛି ନୀହାରିକାର ଗୋଟେ ଗ୍ରେଟ ଫଟୋ । ସେହି ଫଟୋକୁ ସେ ନିବିଷ୍ଟ ଭାବରେ ଚାହିଁରହିଲା । ଦୂରରୁ ଶୁଭିଲା ନିମାଇଁ ଗୋସାଇଁଙ୍କର ଗୀତ । ଗୀତର ମର୍ମ —

"ବାର ବାର ତମେ ମତେ ଠକିଛ,
ତଥାପି ବି ତୁମେ ମୋର ମନେ ପଡୁଛ ।"

ସୁବିମଲ ନିଜ ଅଜାଣତରେ ଆତ୍ମହରା ହୋଇ ପଡ଼ିଛି । ଏତିକବେଳେ ଝଡ଼ଭଳିଆ ପ୍ରବେଶ କରିଛି ତଟିନୀ । ହଠାତ୍ ସୁବିମଲକୁ ଦେଖି ବଜ୍ରଗମ୍ଭୀର କଣ୍ଠରେ ପଚାରିଦେଇଛି— ]

ତଟିନୀ—ଆପଣ ?

ସୁବିମଲ—( ଇତସ୍ତତଃ ହୋଇ ) ମୁଁ ···ମାନେ···ମୁଁ ( କଣ୍ଠରୋଧ ହୋଇଗଲା )

ତଟିନୀ—ପରିଚୟଟା ଦେଇପାରୁନାହାନ୍ତି; ଅଥଚ ଘରେ ପଶି ଅନଧିକାର ଚର୍ଚ୍ଚା ।···

ସୁବିମଲ—( ଛେପ ଢୋକି ) ଆଜ୍ଞା, ମୋର ଭୁଲ୍ ହୋଇଛି ।

ତଟିନୀ—ଭୁଲ୍ ହୋଇଚ କହି କ୍ଷମା ମାଗିନେଲେ ମୁଁ ଆପଣଙ୍କୁ ଭଦ୍ରଲୋକ ଭାବିବି, ନା ! ଆପଣ ଗୋଟେ···ଗୋଟେ···ମାନେ···ଚୋର ।

ସୁବିମଲ—ଅଜ୍ଞା, ନା । ମୁଁ ଯାଉଚି ।

( କହି ପଛେଇ ପଛେଇ ସୁବିମଲ ଚାଲିଯାଉଥିଲା )

ତଟିନୀ—ଫଟୋଟାକୁ ନେଇ କୁଆଡ଼େ ଯାଉଛନ୍ତି ?

ସୁବିମଲ—( ଡର ଡର ଫଟୋଟାକୁ ରଖିଦେଇ ଚାଲିଯାଉଥିଲା )

ତଟିନୀ—( ଗମ୍ଭୀର ଭାବରେ ) ଶୁଣନ୍ତୁ ।

ସୁବିମଲ—( ଡର ଡର ) ଅଜ୍ଞା, ମତେ ଡାକୁଛନ୍ତି ?

ଛଟିଣୀ – ( ବିଦ୍ରୂପ କରି ) ଅଜ୍ଞା !

( ସୁବିମଳ ଡରିଡରି ଆସି ଠିଆହେଲା )

ଛଟିଣୀ––ଆପଣ କାହା ପାଖକୁ ଆସିଥିଲେ ?

ସୁବିମଳ—( ଡରି ଡରି ) ଚନ୍ଦ୍ରସୂବାବୁ ଆଜକାଲି ଏ ଘରେ···

ଛଟିଣୀ—ହଁ, ଚନ୍ଦ୍ରଚନ୍ଦ୍ର । ତାଙ୍କ ପାଖରେ ଆପଣଙ୍କର କି କାମ ? କ'ଣ ଡ୍ରାମାରେ ଆକ୍ଟିଙ୍ଗ୍ କରିବେ ?

ସୁବିମଳ—( ଲଜ୍ଜା ଓ ଡରରେ ) ଅଜ୍ଞା, ନା, ମୁଁ ସେସବୁ···

ଛଟିଣୀ—ଆଉ କଣ, ଆପଣ ଜଣେ writer.ମାନେ, ଡ୍ରାମାଟିଷ୍ଟ ? କଣ ବହିଫହି ନେଇଆସିଛନ୍ତି ନା କ'ଣ ?

ସୁବିମଳ—ନା, ଲେଖାଲେଖି ମୁଁ କରେନା ।

ଛଟିଣୀ—ତା'ହେଲେ ଆଉ କଣ ? ସାମ୍ବାଦିକ ? ଡ୍ରାମାର ନୂତନ ଫିଚର୍ ନେବାକୁ ଆସିଛନ୍ତି ?

ସୁବିମଳ—ଅଜ୍ଞା, ନା ।

ଛଟିଣୀ—ଆଉ କ'ଣ ତାଙ୍କର ବନ୍ଧୁ ?

ସୁବିମଳ—ନା ।

ଛଟିଣୀ—ତା'ହେଲେ ଆପଣ କିଏ ?

ସୁବିମଳ—( ଇତସ୍ତତଃ ହୋଇ ) ମୁଁ···ମୁଁ···

ଛଟିଣୀ—ଆପଣ ଯେବେ ସତକଥା ନ କହନ୍ତି, ବାଧ୍ୟହୋଇ ମୁଁ ପୋଲିସ ଡାକିବି ।

ସୁବିମଳ—( ଥରଥର ହୋଇ ଏକା ନିଃଶ୍ୱାସରେ ) ଅଜ୍ଞା, ବିଶ୍ୱାସ କରନ୍ତୁ, ମୁଁ ଖାଲି ମିହାରିକାକୁ ପଢେ···

ଛଟିଣୀ—( ବିସ୍ମୟରେ ) ମିହାରିକା !!

[ ସୁବିମଳର ସ୍ମୃତିପଟରେ ବୁଲିବୁଲି କୌତୁହଳୀ ଆଖିରେ ତାକୁ ଗୋଡ଼ଠାରୁ ମୁଣ୍ଡଯାଏ ଦେଖିଲା ଛଟିନୀ ]

ଛଟିନୀ– ଓଃ ! ତା ହେଲେ ଆପଣ ସେଇ ସୁବିମଳ ସ୍ୱରୂପଦାସ ?

ସୁବିମଳ– ଅଜ୍ଞା ! ( କହି ସୁବିମଳ ଗୋଟିଏ ବଡ଼ ନିଃଶ୍ୱାସ ମାରିଲା )

ଛଟିନୀ—( ଗମ୍ଭୀର ହୋଇ ) ଆପଣ କାହିଁକି ଆସିଚନ୍ତି ? କିଏ ଆପଣଙ୍କୁ ଏଠିକି ଆସିବାକୁ କହିଲା ? କ'ଣ ଦରକାର ଥିଲା ଆପଣଙ୍କର ଏଠିକି ଆସିବା ?

ସୁବିମଳ—( ବିନୀତ ହୋଇ ) ଅଜ୍ଞା, ମତେ ଟିକେ କହିବାକୁ ଦିଅନ୍ତୁ ।

ଛଟିନୀ—( ରାଗିଯାଇ ) କ'ଣ କହିବେ ? କାହାକୁ କହିବେ ? କିଏ ଆପଣଙ୍କ କଥା ଶୁଣିବ ?

ସୁବିମଳ—( ଅଶ୍ରୁଜଡ଼ିତ କଣ୍ଠରେ ) ମୁଁ ଜାଣେ ମୋ କଥା କେହି ଶୁଣିବେନି । ତଥାପି ଆସିଥିଲି ନୀହାରିକାଙ୍କୁ ପଦେ ବି କହିଯିବି ବୋଲି ।

ଛଟିନୀ—ନୀହାରିକାଙ୍କୁ କହିବେ ? କାହିଁକି ? ତା' ସାଙ୍ଗରେ ଆପଣଙ୍କର କି ସମ୍ପର୍କ ? ନୂଆ କରି ସିଏ ଯୋଉ ନୀଡ଼ ରଚନା କରୁଛି ଆପଣ ସେଥିରେ ନିଆଁ ଲଗେଇବାକୁ ଚାହାନ୍ତି ?

ସୁବିମଳ—( ବିସ୍ମୟ ଓ ଦୁଃଖରେ ଭାଙ୍ଗିପଡ଼ି )—ନୂଆ କରି···ମାନେ···ମାନେ ନୀହାରିକା···

ଛଟିନୀ—ହଁ, ସିଏ ଆଉ ଥରେ ବିବାହ କରୁଛି ।

ସୁବିମଳ—( ସୁବିମଳର କଣ୍ଠ ଥର ଉଠିଲା ) ବିବାହ କରୁଛି ? ? ? ତାହାହେଲେ କ'ଣ ଦରକାର ଥିଲା ମତେ ଚିଠି ଲେଖିବା ? କ'ଣ ଦରକାର ଥିଲା ମତେ ଏଠିକି ଡାକିଆଣିବା ?

ଛଟିନୀ—ହଁ, ଦରକାର ଥିଲା, ସେ ବୁଝେ, ଆପଣ ତାର ସୁଖର ସଂସାରକୁ ଦେଖନ୍ତୁ । ଦେଖନ୍ତୁ ଆଉ ଜଣେ ମଣିଷକୁ ନେଇ ସିଏ କେମିତି ସୁଖୀ ହୋଇ ପାରୁଛି । ଆପଣଙ୍କ ଭଳି ଅଯୋଗ୍ୟ ଅପଦାର୍ଥ ମଣିଷ ତାକୁ ଜୀବନରେ କିଛି ଦେଇପାରିନି ।

ସୁବିମଳ—( ଅନୁତପ୍ତ କଣ୍ଠରେ ) ନା, କିଛି ଦେଇପାରିନି । କହି ଚାଲିଯିବା ଉଠିଲା )

ଛଟିନୀ—( ପଛରୁ ଡାକିଛି ) ଶୁଣନ୍ତୁ ।

ସୁବିମଳ—( ନିର୍ଜୀବ କଣ୍ଠରେ ) କ'ଣ ?

ଛଟିନୀ—ବସନ୍ତୁ । ( ସୁବିମଳ ବସୁ ନ ଥିଲା ) ଆହା···ବସନ୍ତୁ ନା । ଆପଣ ଏମ୍.ଏ. ରେ କି କ୍ଲାସ ପାଇ ଥିଲେ ?

ସୁବିମଳ—ଫାଷ୍ଟକ୍ଲାସ ।

ଛଟିନୀ—ଆଉ ଆଇ. ଏ. ଏସ୍. ରେ ବି ଆପଣଙ୍କର ଭଲ ପୋଜିସନ ଥିଲା !

ସୁବିମଳ—ଆଜ୍ଞା !

ଛଟିନୀ—କିନ୍ତୁ ମୁଁ ପରୀକ୍ଷକ ହୋଇଥିଲେ ଆପଣଙ୍କୁ ଫେଲ୍ କରେଇଥାନ୍ତି !

ସୁବିମଳ—କଣ କହୁଲେ ?

ଛଟିନୀ—ଆପଣ ନମ୍ବର ବୋକା, ମାନେ, Idiot.

ସୁବିମଳ—ଏଁ !

ଛଟିନୀ—ଆପଣଙ୍କ ଭଳି ଲୋକଙ୍କୁ ଡାଇଭୋର୍ସ କରି ନୀହାରିକା ଠିକ୍ କରିଥିଲା । ହେଲେ ଫେର କାହିଁ ତା ମନ ବଦଳିଲା ମୁଁ ବୁଝିପାରୁନି ।

ସୁବିମଳ—( ଆଶ୍ଚର୍ଯ୍ୟରେ ) ଆପଣ କ'ଣ କହୁଛନ୍ତି ?

ଛଟିନୀ—ବିଶ୍ୱାସ କରନ୍ତୁ, ଆପଣଙ୍କ ଭଳି ଅପଦାର୍ଥ ପାଇଁ ନୀହାରିକା ଜାଗର ଜାଳି ବସିଛି । ରୁହନ୍ତୁ, ମୁଁ ଡାକିଦେଉଛି । ଆପଣ କିନ୍ତୁ ଏଇଠି ଅନ୍ଧାରରେ ବସିଥାଆନ୍ତୁ, କିଛି ମନେ କରିବେନି ।

[ ବୈଠକଖାନାର ଲାଇଟ୍‌ଟା ଲିଭେଇ ଦେଲା ଛଟିନୀ । 'ନୀହାରିକା' 'ନୀହାରିକା' ଡାକି ଡାକି ଶୋଇବା ଘରକୁ ଆସିଲା । ଭିତରୁ ନୀହାରିକା ଜବାବ୍ ଦେଲା ]

ନୀହାରିକା—'ଏଇଠି ଅଛୁ, ଛଟିନି ! ଠାକୁରଘରର ଦୀପ ଲଗଉଛି ।'

ଛଟିନୀ—ଦାଣ୍ଡଘରର ଅଲୁଅଟା ଲିଭିଯାଇଚି । ଦୀପଟା ଇଆଡ଼େ ଆଣ୍ ତ ।

[ ନୀହାରିକା ଗୋଟାଏ ହାତରେ ଦୀପ ଓ ଆଉ ଗୋଟାଏ ହାତରେ ଶଙ୍ଖ ଧରି ଶୋଇବାଘରକୁ ଆସିଲା ]

ନୀହାରିକା—ଠାକୁରଘରେ ମୁଁ ଦୀପ ଦେଉଛି, ତମେ ଶଙ୍ଖ ନିଅ ।

ଛଟିନୀ—ହଁ, ତମେ ଆଗେ ଦାଣ୍ଡଘରେ ଦେଇ ସେ ଦୀପଟା ଥୋଇଦେଇ ଆସିଲ ।

[ ନୀହାରିକା କିଛି ନ ଜାଣି ଦୀପ ଧରି ବୈଠକଖାନାକୁ ଅସିଛି । ତା ପଛେ ପଛେ ଶଙ୍ଖ ହାତରେ ଛଟିନୀ । ବୈଠକଖାନାରେ ଥାଇ

ସୁବିମଳ ନୀହାରିକାଙ୍କୁ ଦେଖିଲେ । ମୁଣ୍ଡରେ ସିନ୍ଦୂର, ହାତରେ ଚୂଡ଼ି । ତା'ର ମନେହେଲା, ଏ ନୀହାରିକା ସେ ନୀହାରିକା ନୁହେ । ଦୀପ ଆଲୋକ ପାଖକୁ ଆସିବାରୁ ଠିଆ ହୋଇ ପଡ଼ିଲେ ସୁବିମଳ । ନୀହାରିକା ସୁବିମଳଙ୍କୁ ଦେଖି ଚମକି-ପଡ଼ିଲେ । ଦୀପଥିବା ହାତ ଥରିବାକୁ ଲାଗିଲା । ତଟିନୀ ଶଙ୍ଖ ବଜେଇବାକୁ ଲାଗିଲା । ସୁବିମଳ ବାଷ୍ପାକୁଳ କଣ୍ଠରେ ଡାକିଲେ 'ନୀହାର' ! ନୀହାରିକା ଲଜରେ ମୁହଁ ତଳକୁ କଲେ ]

ତଟିନୀ—କ'ଣ ହଦେଇ ବହିଙ୍କି ଦେଖି ଏମିତ ଚମକିପଡ଼ିଲ ଯେ ! ଯା, ଦୀପଟା ନେଇ ଝିଏ ବନ୍ଦେଇ ଦେ । ମୋ ଠାକୁର ପିନା ଘର ଭିତରେ, ତୋ ଠାକୁର ତ ଏଇଠି । ( ପୁଣି ଶଙ୍ଖ ବଜେଇବାକୁ ଲାଗିଲା ତଟିନୀ )

ସୁବିମଳ—( ନୀହାରିକାର ପାଖକୁ ଲାଗିଯାଇ ) ତମେ ମତେ କ୍ଷମା କରିଛ ?

( ନୀହାରିକା କାନ୍ଦିବାକୁ ଲାଗିଲା )

ସୁବିମଳ—ମୁଁ ତୁମକୁ କଷ୍ଟ ଦେଇପାରିନ ।

[ ନୀହାରିକା ହାତରୁ ଥରି ଥରି ଦୀପ ଖସିପଡ଼ୁଛି । ଦୁହେ ଦୁହିଙ୍କି ଖୁବ ବେଗରେ କୁଣ୍ଢାଇ ଧରିଛନ୍ତି । ତଟିନୀ ଶଙ୍ଖ ଫୁଙ୍କୁଛି ଅଦ୍ଭୁତ ଜୋରରେ । ନମାଇଁ ଗୋସେଇଁଙ୍କ ଗୀତ ଶୁଭୁଛି ପୃଷ୍ଠଭୂମିରୁ ଜୋରରେ—ଖୁବ୍ ଜୋରରେ ]

[ ପରଦିନ ସକାଳ । ବୈଠକଖାନାରେ ଚନ୍ଦ୍ରସୂ ଓ ସୁବିମଳ ବସି ଗପ କରୁଥିଲେ ]

ଚନ୍ଦ୍ରସୂ—ତମେ ଆସିଲ, ଅଥଚ ଗୋଟେ ଟେଲିଗ୍ରାମ କଲନି ? କିଛି ଖବର ବ ଦେଲନି ?

ସୁବିମଳ—ଆପଣ ତ ହଠାତ୍ ବାହା ହେଇ ପଡ଼ିଲେ ଯେ ଖବରଟେ ଦେଲେନି ।

ଚନ୍ଦ୍ରସୂ—ମୁଁ ବାହା ହେଇଚ ! ଏ କଥା କିଏ କହିଲା ?

ସୁବିମଳ—ଶୁଣିବା କଥାଟା ବିଶ୍ୱାସ ନ କଲେ ବି ଦେଖିବା କଥାଟାକୁ ନିଶ୍ଚୟ ମଣିଷ ବିଶ୍ୱାସ କରିବା ଉଚିତ ।

ଚନ୍ଦ୍ରସ୍ତ—ଓଃ, ତମେ ବି ଶେଷରେ ଏଇଥି। ଭାବିଲ ?

ସୁବିମଳ—ମୁଁ ଆଉ ଭାବିବି କ'ଣ ? ଭାଉଜ ତ ମତେ ପ୍ରଥମ ଦେଖାରେ ବୋକା ବନେଇଦେଲେ ।

ଚଟିନୀ—( ଦ୍ୱାରରେ ଗୁଡ଼ା ଧରି ପ୍ରବେଶ କରି ) ତୁମକୁ ବୋକା ବନେଇଦେଲି କ'ଣ ? ତୁମେ ତ ମୂଳରୁ ବୋକା ଥିଲ ।

ସୁବିମଳ—ହଉ, ତମରି କଥା ହେଲା, ମୁଁ ବୋକା ଥିଲି; ହେଲେ ଏ ଭାଇ ତ ବୋକା ନ ଥିଲେ; ତମେ ତାଙ୍କୁ ବୋକା ବନେଇଦେଇଛ । ତମ ହାତ୍ରୁ ତ ସିଏ ପଞ୍ଜବନା···

ଚଟିନୀ—ଚୁପ୍ କର !

ସୁବିମଳ—( ହାତ ଯୋଡ଼ି ) ଦୟାକରି ତୁମ ନନ୍ଦ ରଞ୍ଜନଙ୍କୁ ଏଇ ବିଦ୍ୟାଟା ଶିଖାଅନ୍ତୁ ।

ଚଟିନୀ—ଅଲବତ୍ତ ଶିଖେଇବି । ତମେ ଏବେ ବୋକା ଅଛ; କିନ୍ତୁ ସ୍ୱାପରେ ଫୁଲ ଶୁଙ୍ଘି ହେବ ମେଣ୍ଢା ।

ଚନ୍ଦ୍ରସ୍ତ—ରଞ୍ଜା କୁଆଡ଼େ ଗଲା ?

ଚଟିନୀ—ସିଏ ପରା ସିଆଡ଼େ ଚଣ୍ଡୀମନ୍ଦିର ଯିବ ବୋଲି ବେଶ ହୋଇ ବସିଛି ।

ଚନ୍ଦ୍ରସ୍ତ—ଯାଉନ, ବସିଚ କାହିଁକି ?

ଚଟିନୀ—ଯିବ କିପିଁ ? ତାର fifty percent partner ତ ଏଇଠି ।

ଚନ୍ଦ୍ରସ୍ତ—ସୁବିମଳ ! ତମେ ରଞ୍ଜାକୁ ନେଇ ଚଣ୍ଡୀମନ୍ଦିର ଯାଅ ।

ସୁବିମଳ—ଆମେ ଏକା ଯିବୁ ? ଆପଣ ଆଉ ଭାଉଜ ଗଲେ କ୍ଷତି କ'ଣ ?

ଚନ୍ଦ୍ରସ୍ତ—ମୋର କାମ ଅଛି ।

ଚଟିନୀ—( ସୁବିମଳ ପ୍ରତି ) ଆରେ ବାବା ! ତମଭଳିଆ ସିଏ henpecked ନୁହନ୍ତି ଯେ ମାଇପ କଥାରେ ଉଠାବସା ହେବେ । ତମେ ରଞ୍ଜାକୁ ନେଇ ଗଲ ।

ସୁବିମଳ—କିଛି ନ ହେଲେ ସୁଜନ, ତମେ ଆମ ସାଙ୍ଗରେ ଚାଲ ।

ତଟିନୀ—ତମ ଦୁ'ଜଣଙ୍କ ଭିତରେ ମୁଁ କାହିଁ ଗୋଟାଏ ବାଡ଼ ପକେଇବାକୁ ଯିବି ?

ସୁବିମଳ—ନା, ମୋର ମନେହେଉଚି ତୁମର ଅସଲ ଆପତ୍ତିଟା ତନ୍ମୟ ଭାଇଙ୍କୁ ଏଠି ଏକା ଛାଡ଼ି ଯିବାରେ...

( ନୀହାରିକା ଡ୍ରେସିଂ ହୋଇ ବୈଠକଖାନାକୁ ଆସିଛି )

ନୀହାରିକା—ସୁଜନଙ୍କୁ ତମେ କଥାରେ ପାରିବ, ଭାବିଚ ? ସିଏ କମ୍ ନୁହନ୍ତି । ତାଙ୍କର ପାଲରେ ପଡ଼ି ମୋତେ କୁମାରୀ ବ୍ରତ ଭାଙ୍ଗିବାକୁ ହେଲା ।

ତଟିନୀ—କୁମାରୀ ବ୍ରତ ତ ଭାଙ୍ଗିଲ, ଏବେ ସାବିତ୍ରୀ ବ୍ରତ ପାଳ; ତେବେ ଯାଇଁ ଜାଣିବି ଯେ ଠିକ୍ ମୋ କଥା ରଖିଚ ।

ନୀହାରିକା—ସୁଜନଙ୍କ କଥାର ଜବାବ ନ ଦେଇ ତମେ ଚାଲିଲ ! ସୁଜନ ଆମ ସାଙ୍ଗରେ ଯିବେ, ଅଲବତ୍ ଯିବେ, ତମେ ଚାଲିଲ ।

[ ସୁବିମଳ ଆଗରେ ଚାଲିଲେ । ତଟିନୀ ଓ ରଭା ପଛେ ପଛେ ଗଲେ । ତଟିନୀ ଗଲାବେଳେ କହିଗଲା ତନ୍ମୟଙ୍କୁ ]

ତଟିନୀ—ଆମେ ଫେରିବାକୁ ଡେରି ହବ । ତୁମେ ଆମକୁ ଅପେକ୍ଷା ନ କରି ଖାଇ ନେଇଥିବ ।

[ ତନ୍ମୟ ଗମ୍ଭୀର ଭାବରେ ସୋଫା ଉପରେ ବସିଥାଏ । ଏହି ସମୟରେ ଗୁମାସ୍ତା ଗମ୍ଭୀର ଭାବରେ ବଜାରରୁ ଆସି ଘରେ ପ୍ରବେଶ କରି ଠାକୁରଙ୍କୁ ହାତଯୋଡ଼ି ମୁଣ୍ଡିଆ ମାରୁଛି ]

ତନ୍ମୟ—କାହାକୁ ପ୍ରଣାମ କରୁଚ, ଗୁମାସ୍ତାଏ ?

ଗୁମାସ୍ତା—ଠାକୁରଙ୍କୁ ଆଜ୍ଞା, ଠାକୁରଙ୍କୁ ।

ତନ୍ମୟ—ଠାକୁର କ'ଣ ତୁମକୁ କିଛି ଦେଲେ ?

ଗୁମାସ୍ତା—ଆଉ କ'ଣ ଦିଅନ୍ତେ ? ଯାହା ଦେଇଚନ୍ତି ଦେଇ ଢେର ।

ତନ୍ମୟ—କ'ଣ ଦେଇଛନ୍ତି ?

ଗୁମାସ୍ତା—ଆମ ଦେଉ ଅଲ୍ପ ଜୋଉଁ ବାବୁଙ୍କୁ ନେଇ ବୋହୂ ସାଆନ୍ତାଣୀ ଚଣ୍ଡୀ ମନ୍ଦିରକୁ ଯାଉଚନ୍ତି, ଦେଖିଲ । ଏ ଘର ପୁରୋହିତ ଆଜ୍ଞା, ଏ ଘର ପୁରୋ-ହିତ । ସବୁ ଠାକୁରଙ୍କ ଲୀଳା ।

ତନ୍ମୟ—ତମର ଆଜ ଗାଁକୁ ଯିବାର ଥିଲା ନା ?

ଗୁମାସ୍ତା—ହଁ ଆଜ୍ଞା ! ମୁଁ ବାହାରିଲି; ହେଲେ ତମେ ଆଉ ହେଲା ତତ୍ତ୍ୱବନ୍ଧ ।

ତନ୍ମୟ—କୋଉ କଥା ?

ଗୁମାସ୍ତା—ବୁଧବାର ଦିନକୁ 'ଦିନବାର' ଧାର୍ଯ୍ୟ ହେଉଛି । ସୁଆର, ପାଲିଙ୍କି ସବୁ ଆସି ପହଞ୍ଚିବ । ବାଜାବାଲା, ବାଣ, ରୋଷଣି ସବୁ କଟକରୁ ଯିବ ।

ତନ୍ମୟ—କାହିଁକି ଏସବୁ ପାଳି ଲାଗିଚ ?

ଗୁମାସ୍ତା—( ଚମକିପଡ଼ି ) ଏଁ ! ପାଳି ଲାଗିଚ ? କେମନ୍ତ ? ବୋହୂ ସାଆନ୍ତାଣୀ ଯାଉଚନ୍ତି ବୋଲି ମୂଲକଟାଯାକ ଉଠୁଚି, ପଡୁଚି···

ତନ୍ମୟ—ହଁ, ମୂଲକଟାଯାକ ଉଠୁଚି, ପଡୁଚି; ସବୁ ତମରିମାନଙ୍କ ପାଇଁ । ଶେଷରେ ଦେଖିବ, ମତେ ଏ ଘର ଛାଡ଼ି ଯିବାକୁ ପଡ଼ିବ ।

ଗୁମାସ୍ତା—ଛି, ଏମିତି କଥା କହନ୍ତୁନି, ବାବୁ ! ବୁଢ଼ା ସାଆନ୍ତଙ୍କ ଗୁଡ଼ ଆଜ କୁଣ୍ଡେ ମୋଟ । କେତେ ଲୋକ ଅନେଇଚନ୍ତି । ଆଜ ସିନା ଏ ବଂଶର କର୍ପୂର ଉଡ଼ିଯାଇଚ, ହେଲେ କନା ଖଣ୍ଡିକ ତ ଅଛି ।

ତନ୍ମୟ—ବାପା ତାଙ୍କ ଖିଆଲରେ ମାତିଚନ୍ତି । ଲୋକେ ମହଜ ମଜଲିସ କରିବେ ବୋଲି ଅନେଇଚନ୍ତି । ହେଲେ ସ୍ୱା' ଭିତରେ ମୋ ଅବସ୍ଥା କ'ଣ ହେଉଛି ?

ଗୁମାସ୍ତା—ତମେ ତ ଯେମିତି ଥିଲ ସେଇମିତି, ସେଇ ଗୀତ, ନାଚ, ଥିଏଟର, ଆଖଡ଼ା, ନାଟକ ··

ତନ୍ମୟ—ନା, ଆଉ ନାଟକ ନୁହେଁ । ସେ ନାଟକ ଶେଷ କରିବାକୁ ହେବ ।

ଗୁମାସ୍ତା—କ'ଣ ଗୁଡ଼ାଏ ବାବୁ କହୁଚ, ମୁଁ କିଛି ବୁଝିପାରୁନି ।

ତନ୍ମୟ—ମୁଁ ଜାଣେ, ତମେମାନେ କିଛି ବୁଝିବନି; ତମେମାନେ କିଛି ବିଶ୍ୱାସ କରିବନି। ତମେମାନେ କେହି ମୋ କଥା ଶୁଣନା। ନା, କେହି ନୁହେଁ। ଗୁଲିଯାଅ! କାହିଁ ଠିଆ ହେଇଚ ମୋ ଆଗରେ?

[ ଚିତ୍କାର କରି ଉଠିଲି। ଗୁମାସ୍ତା ଭୟରେ ଗ୍ଲଲିଯାଇଛି ]

ତନ୍ମୟ—( ସ୍ୱଗତ ) ଆଜିର ଏଇ ନାଟକରେ ମୁଁ ନାୟକ। ଅଥଚ ମୋ'ର ଭୂମିକା କଣ ମୁଁ ଜାଣେନା। ନାଟକର ପରିଣତି 'ଟ୍ରାଜେଡ଼ି' କି'କମେଡ଼ି' ତା' ବି ମୁଁ ଜାଣେ ନା। କେଉଁ ଅଜଣା ଲେଖକର ଅଦୃଶ୍ୟ ଲେଖନୀ ମତେ ଏଇ ଅନ୍ଧକାର ସ୍ରୋତରେ ଭସେଇ ନେଇ ଗ୍ଲଲିଛି···କୁଆଡ଼େ? କେଉଁଠିକି? ମୁଁ କିଛି ଜାଣେ ନା। ମୁଁ ଅଭିନୟ କରିବାକୁ ଗ୍ଲହେନା!, କିନ୍ତୁ ବାଧ୍ୟ ହୋ'ଇ ମତେ ଅଭିନୟ କରିବାକୁ ପଡ଼ୁଛି। ସମସ୍ତେ ଅଛନ୍ତି ଅଥଚ କେହି ମୋ କଥା ଶୁଣୁନାହାନ୍ତି—କେହି ମୋ କଥା ଶୁଣୁନାହାନ୍ତି। ମୁଁ କି ଅସହାୟ! ମୁଁ କି ଅସହାୟ!

[ ପ୍ରବେଶ କରିଛନ୍ତି ମାନସିକ ଚିକିତ୍ସାଳୟର ବର୍ତ୍ତମାନର ସୁପରିଣ୍ଟେଣ୍ଡେଣ୍ଟ Doctor ଆଚାର୍ଯ୍ୟ ]

Dr. ଆଚାର୍ଯ୍ୟ—କ୍ଷମା କରିବେ, ମୁଁ ଆପଣଙ୍କର permission ନ ନେଇ ଭିତରକୁ ଗ୍ଲଲିଆସିଛି।

ତନ୍ମୟ—( ଯନ୍ତ୍ର ଗ୍ଲଳିତ ପରି ପିଅଡ଼ୁକୁ ନ ଗ୍ଲହିଁ ) କ'ଣ ଦରକାର୍ ମୋ ପାଖରେ?

Dr.—ମନେହେଉଛି ଆପଣ ବଡ଼ ବିବ୍ରତ।

ତନ୍ମୟ—( ବୁଲିପଡ଼ି ) ତଳେ ଲୋକ ଷଡ଼ଯନ୍ତ୍ର କରି ଯଦି ଆପଣଙ୍କୁ ଖୁନ୍ କରିବାକୁ ଗ୍ଲହାନ୍ତି ତା'ହେଲେ ଆପଣ ବିବ୍ରତ ହେବେନି?

Dr.—କିନ୍ତୁ ଆପଣଙ୍କୁ ଖୁନ୍ କରିବ କିଏ?

ତନ୍ମୟ—( ସେହିପରି ) ଏମାନେ ସମସ୍ତେ ମିଶି···

Dr.—ଆପଣ କିନ୍ତୁ କଣ କହୁଛନ୍ତି???

ତନ୍ମୟ—( ନିଜକୁ ସଂଯତ କଲି ଏବଂ ତା'ପରେ Dr. ଆଚାର୍ଯ୍ୟଙ୍କୁ ଗ୍ଲହିଁ କହିଲି ) I am sorry, ଆପଣଙ୍କୁ ଠିକ୍ ଚିହ୍ନି ପାରିନି। ଆପଣ କାହିଁକି ଅସିଛନ୍ତି?

Dr.—ଅସିଚ୍ଛୁ ଗୋଟେ ଜରୁରୀ କାମରେ ।

ତନ୍ମୟ—ଜରୁରୀ କାମ ? ମୋ ପାଖରେ ?

Dr.—ହଁ, ଖାଲି ଜରୁରୀ ନୁହେଁ, କଥାଟା ଗୋପନୀୟ ମଧ୍ୟ ।

ତନ୍ମୟ—ଗୋପନୀୟ ?

Dr.—ହଁ, କାରଣ ଏଥିରେ କେତେଗୁଡ଼ିଏ ଭଦ୍ର ପରିବାରର ମାନ ଛନ୍ଦିତ ଜଡ଼ିତ ।

ତନ୍ମୟ—କଣ ହେଉଛି, କୁହନ୍ତୁ ।

Dr.—ଏଇ ଅଳ୍ପ ସମୟ ଆଗରୁ ଦୁଇଜଣ ଭଦ୍ରମହିଳା ଆପଣଙ୍କ ଘରୁ ବାହାରି ଚଣ୍ଡୀମନ୍ଦିର ଆଡ଼କୁ ଗଲେ । ସେମାନଙ୍କ ସାଙ୍ଗରେ ଜଣେ ପୁରୁଷ ମଧ୍ୟ ଅଛନ୍ତି ।

ତନ୍ମୟ—କ'ଣ ରାସ୍ତାରେ କିଛି accident ?

Dr.—ନା, ମୁଁ ଖାଲି ସେମାନଙ୍କର ପରିଚୟ ଜାଣିବାକୁ ଚାହେଁ ।

ତନ୍ମୟ – ପୁରୁଷଜଣକ ମୋର ସାନଭଉଣୀର ସ୍ୱାମୀ ପୁଷ୍ପମଳ ।

Dr.—କ୍ଷମା କରିବେ, ସେ ଭଦ୍ରମହିଳା ଦୁଇ ଜଣ ?

ତନ୍ମୟ –ଜଣେ ମୋ ସାନଭଉଣୀ ମନୋହରିକା ।

Dr.—ଆଉ ଜଣେ ?

ତନ୍ମୟ—ମୋ ସ୍ତ୍ରୀ ।

Dr.—( ଆଶ୍ଚର୍ଯ୍ୟରେ ) ଆପଣଙ୍କର ସ୍ତ୍ରୀ ! ! !

ତନ୍ମୟ—ହଁ, ଏଇ କିଛିଦିନ ହେଲା ଆମର ବିବାହ ହୋଇଛି । ମାନେ, love marriage, University drama competitionରେ ନଟିନୀ ସାଙ୍ଗରେ ମୋର ପରିଚୟ । ତା'ପରେ ଚିଠିପତ୍ର, ଆଉ ଶେଷରେ ସମସ୍ତଙ୍କର ଅଜାଣତରେ ଆମେ ପରସ୍ପରକୁ ବିବାହ କଲୁ ଏଇ ଚଣ୍ଡୀ ମନ୍ଦିରରେ ।

Dr.—ଆପଣ ଯାହା କହୁଚନ୍ତି ମୋତେ କାହିଁକି କେମିତି ଠିକେ ଖାପଛଡ଼ା ମନେହଉଛି ।

ତନ୍ମୟ—ତାହିଁକି, କଣ ବିଶ୍ୱାସ ହଉନି ?

Dr.—କ୍ଷମା କରିବେ, ମୁଁ ଆପଣଙ୍କ ମନରେ ଆଘାତ ଦେବାକୁ ଆସିନି ।

ତନ୍ମୟ—( ଦୁଃଖରେ ମ୍ରିୟମାଣ ହୋଇ ) ଆଘାତ ! ସେ ତ ମୋ ପାଇଁ କିଛି ନୂଆ କଥା ନୁହେଁ । ବନ୍ଧୁବାନ୍ଧବ ସମସ୍ତେ ମତେ ଆଘାତ କରିଚନ୍ତି । କେହି···କେହି ମତେ ବିଶ୍ୱାସ କରିନାହାନ୍ତି ।

Dr.—ମୁଁ କିନ୍ତୁ ଆପଣଙ୍କୁ ବିଶ୍ୱାସ କରୁଛି ।

ତନ୍ମୟ—( ବିଦ୍ରୂପର ହସ ହସି ) ଆପଣ ମତେ ବିଶ୍ୱାସ କରୁଛନ୍ତି ? ସତ କହୁଛନ୍ତି ? ଆପଣ ମତେ ବିଶ୍ୱାସ କରୁଛନ୍ତି ?

Dr.—( ଦୃଢ଼ତାର ସହିତ ) ହଁ, ବିଶ୍ୱାସ କରୁଛି । କେବଳ ବିଶ୍ୱାସ କରୁନି, ଆପଣଙ୍କର କହିବା କଥା ଭିତରୁ କେଉଁଟା ସତ, ଆଉ କେଉଁଟା ମିଛ ତା' ମଧ୍ୟ ମୁଁ ଜାଣିପାରୁଛି ।

ତନ୍ମୟ—( ଗମ୍ଭୀର ହୋଇ ) ତା' ହେଲେ କୁହନ୍ତୁ ଚଟିନୀ ସାଙ୍ଗରେ ମୋର କଲେଜ ଜୀବନର ଯେଉଁ ପ୍ରେମ, ଆଉ ବିବାହ କାହାଣୀ ମୁଁ କହିଲି, ସେ ସତ ନା ମିଛ ?

Dr.—ମିଛ, ଖାଲି ମନଗଢ଼ା କଳ୍ପନା ।

ତନ୍ମୟ—ତା'ହେଲେ ଶୁଣନ୍ତୁ । ଆପଣ ଯେଉଁ ଭଦ୍ରମହିଳାଙ୍କୁ ମୋ ଭଉଣୀ ଭିଣୋଇଙ୍କ ସାଙ୍ଗରେ ଦେଖିଛନ୍ତି ସେ ମୋର କେହି ନୁହନ୍ତି । ( ଚିତ୍କାର କରି ଉଠିଲା ) ମୁଁ ତାଙ୍କୁ ଚହ୍ନେ ନା ଜାଣେ ନା । ( ଚିତ୍କାର ବନ୍ଦକରି ବଡ଼ ଅସହାୟ ଭାବେ କହିଲା ) ଆପଣ ମତେ ବିଶ୍ୱାସ କରନ୍ତୁ ।

Dr.—ମୁଁ ଠିକ୍ ଏଇ ଉତ୍ତର ଆପଣଙ୍କ ମୁହଁରୁ ଆଶା କରୁଥିଲି ।

ତନ୍ମୟ ( ଆନନ୍ଦରେ ଚିତ୍କାର କରିଚ ଏଇ ଉତ୍ତର ଆଶା କରୁଥିଲେ ? ତା' ହେଲେ ଆପଣ ବିଶ୍ୱାସ କରିଛନ୍ତି ମୋର ସେ କେହି ନୁହେଁ ?

Dr.—ହଁ, ବିଶ୍ୱାସ କରୁଚ । ଆଉ ଆପଣ ଜାଣିରଖନ୍ତୁ, ସେଇ ଝିଅଟାକୁ ଖୋଜି ଖୋଜି ମୁଁ ଏଠିକି ଆସିଛି ।

ତନ୍ମୟ—( ଆଶ୍ଚର୍ଯ୍ୟ ହୋଇ ) ଆପଣ ତା'କୁ ଚହ୍ନନ୍ତି ?

Dr.—ହଁ, ଖାଲି ଚହ୍ନେ ନୁହେଁ, ଭଲ ଭାବରେ ଚହ୍ନେ ।

ତନ୍ମୟ—( ଗମ୍ଭୀର କଣ୍ଠସ୍ୱରରେ ) ତା'ହେଲେ ସିଏ ଡାହାଣୀ ନୁହେଁ ?

Dr.—ଡାହାଣୀ ! ! ( ହସିଲେ )

ତନ୍ମୟ—ଆପଣ ତାକୁ କେମିତି ଜାଣିଲେ ?

Dr.—ଦୀର୍ଘଦିନ ଧରି ମୁଁ ତାକୁ ଚିକିତ୍ସା କରିଛି ।

ତନ୍ମୟ—( ବିଶ୍ୱାସ ନ କରି ଭଳି ଆଶ୍ଚର୍ଯ୍ୟ ହୋଇ ) ଚିକିତ୍ସା ! ! !

Dr.—ସେ ଡାକ୍ତରଖାନାରେ ମୋର ରୋଗୀ ଥିଲା ।

ତନ୍ମୟ—( ଆହୁରି ଆଶ୍ଚର୍ଯ୍ୟ ହୋଇ ) ଡାକ୍ତରଖାନା ? ରୋଗୀ ? କ'ଣ କହୁଛନ୍ତି ଆପଣ ?

Dr.—ମୁଁ ମାନସିକ ଚିକିତ୍ସାଳୟର ପ୍ରଫେସର Dr. Acharya.

ତନ୍ମୟ—ଆଜ୍ଞା, ନମସ୍କାର । ମୁଁ ଆପଣଙ୍କୁ ଚିହ୍ନି ପାରିନି, କିଛି ମନେ କରିବେନି ।

Dr.—ନା ନା, ଏଥିରେ mind କରିବାର କଣ ଅଛି ? ବରଂ ଖୁସି ହେଉଛି ଯେ ମୋର ଗୋଟାଏ ଅସହାୟ ମାନସିକ ରୋଗୀକୁ ଆପଣ ନିରାପଦ ଆଶ୍ରୟ ଦେଇଛନ୍ତି । ସମସ୍ତଙ୍କ ଅଜାଣାରେ ଡାକ୍ତରଖାନାରୁ ସିଏ ପଳେଇ ଆସିଥିଲା ! ସୁବର୍ଣ୍ଣା ଝିଅ, ତାକୁ ଯେ ଖୋଜି ପାଇବା ସହଜ ହେବ, ସତରେ ମୁଁ ବିଶ୍ୱାସ କରିପାରୁ ନ ଥିଲି ।

ତନ୍ମୟ—ମୁଁ ଠିକ୍ ବିଶ୍ୱାସ କରିପାରୁନି ।

Dr.—ବିଶ୍ୱାସ ହେଉନି ? ଆଚ୍ଛା, ଏଇ ଡାଏରୀଟା ଦେଖନ୍ତୁ । ଯା ଭିତରେ ତା'ର ଫଟୋଗ୍ରାଫ୍ ମଧ୍ୟ ଅଛି ।

[ ତନ୍ମୟ ହାତକୁ ଗୋଟିଏ ଡାଏରୀ ବଢ଼ାଇଦେଲେ ଡାକ୍ତର । ତନ୍ମୟ ସେଇ ଡାଏରୀର ପୃଷ୍ଠାଗୁଡ଼ା ଖେଳେଇବାକୁ ଆରମ୍ଭ କଲା । ଏତିକିବେଳେ ଫଟୋଟାଏ ତା ହାତକୁ ଖସିପଡ଼ିଲା । ସେ ଫଟୋଟାକୁ ହାତରେ ଧରି ଦେଖିଲା । ଆଶ୍ଚର୍ଯ୍ୟ ହେଲା ]

Dr.—ଏତକ ଦେଖି ଆପଣ ଆଶ୍ଚର୍ଯ୍ୟ ହଉଛନ୍ତି ? Case history ଶୁଣିଲେ ଆପଣ ଅଦ୍ଭୁତ ଆଶ୍ଚର୍ଯ୍ୟ ହେବେ ।

[ ମଞ୍ଚର ଆଲୋକ କମିଯାଇ Dr. Acharya-ଙ୍କର ମୁହଁ ଉପରେ କେନ୍ଦ୍ରୀଭୂତ ହେଲା । ତନ୍ମୟ ତା'ର ପୃଷ୍ଠା ଓଲଟାଉଥାଏ । ଆଉ ଏକ ଆଲୋକ ରଶ୍ମି ତା ଉପରେ । Dr. କହିବାକୁ ଆରମ୍ଭ କଲେ ତଟିନୀର case history ]

ସୁଦୂର ମଫସଲର ଏକ ସମ୍ଭ୍ରାନ୍ତ ପରିବାର । ପରିବାରର ଏକମାତ୍ର ଉତ୍ତରାଧିକାରିଣୀ ଏଇ କାବ୍ୟ ତଟିନୀ । ବଡ଼ଘରେ ଜନ୍ମ । ଭଲରେ ବଢ଼ିଆସିଥିଲା । ତା ବାପ ତାକୁ ବାହା କରେଇ ଦେଲେ Indian air forceର ଏକ ପଦସ୍ଥ କର୍ମଚାରୀ ଇନ୍ଦ୍ରଜିତ ରାୟଙ୍କ ସହିତ···

ତନ୍ମୟ—( ଆଶ୍ଚର୍ଯ୍ୟରେ ) ତା'ହେଲେ ତଟିନୀର ବିବାହ ହୋଇଛି ?

Dr.—ହଁ, କିନ୍ତୁ ବିବାହ ଉତ୍ସବର ସେହି ମାଙ୍ଗଳିକ ସାହାନାଇ ଭିତରେ air forceର head quarterରୁ ଇନ୍ଦ୍ରଜିତ ରାୟଙ୍କ ପାଖକୁ ଆସିଲା ଏକ ଜରୁରୀ ନିର୍ଦ୍ଦେଶ । ଭାରତର ସୀମାନ୍ତରେ ଯୁଦ୍ଧ । ଦେଶର ନିରାପତ୍ତା ବିପନ୍ନ କରି ଆଗେଇ ଆସୁଛି ଶତ୍ରୁ । ଆଗେଇ ଆସୁଛନ୍ତି ରାଇଫଲ ବାହିନୀ, ଟ୍ୟାଙ୍କ ବାହିନୀ, ଆଉ ହାତରେ ମେସିନଗନ୍ ନେଇ ହଜାର ହଜାର ସଂଖ୍ୟାରେ ଆକାଶଛତା ସୈନିକ । ଏଇ ବ୍ୟାପକ ଆକ୍ରମଣରେ ପ୍ରତିରୋଧ କରିବାକୁ ହେବ । Top defence emergency. ଇନ୍ଦ୍ରଜିତ ରାୟଙ୍କୁ ବିବାହର ଶୁଭଲଗ୍ନ, ବ୍ରାହ୍ମଣର ବେଦମନ୍ତ୍ର, ନବବଧୂର ଆଲିଙ୍ଗନ ସବୁ ଛାଡ଼ି, ସେଇ ମୁହୂର୍ତ୍ତରେ ଯିବାକୁ ପଡ଼ିଲା ।

ତନ୍ମୟ—ତା'ପରେ ସେ ଯୁଦ୍ଧ ଶେଷ ହେଲା କେବେ ?

Dr.—ଯୁଦ୍ଧର ସେଇ ବିଭୀଷିକା ଭିତରେ ଇନ୍ଦ୍ରଜିତ ରାୟ ବୀରବିକ୍ରମରେ ଶତ୍ରୁର ପ୍ରତିରୋଧ କଲେ । କିନ୍ତୁ ସେଇ ଯୁଦ୍ଧ ଭିତରେ ତାଙ୍କର ବିମାନ ହେଲା

ନିଖୋଜ ଅଛୁ ସେ ହେଲେ ନିରୁଦ୍ଦିଷ୍ଟ । Air force head quarterରୁ ଖବର ଆସିଲା ଇନ୍ଦ୍ରଜିତ ରାୟ ମୃତ...

ତନୁଶ୍ରୀ—ମୃତ ? ?

Dr.—ମୃତ ଜୀବନରେ ଆଉ ନାହାନ୍ତି ।

ତନୁଶ୍ରୀ—ପାଇଲଟମାନଙ୍କ ଜୀବନରେ ଏ ପରିଣତି ନୂଆ ନୁହେଁ । କିନ୍ତୁ ତଟିନୀ କ'ଣ ଏ ସବୁ ଖବର...

Dr.—ନା, ଏ ସବୁ ଖବର ତାକୁ ଜଣେଇ ତା ହାତରୁ ଶଙ୍ଖା ଆଉ ମଥାରୁ ସିନ୍ଦୂର ଲିଭେଇଦବାର ଧୈର୍ଯ୍ୟ ତା ବାପାଙ୍କର ନ ଥିଲା । ସେଥିପାଇଁ ତା ଆଗରେ ମିଛର ଗୋଟାଏ ମହଲ ତିଆରି କରାଗଲା ।

ତନୁଶ୍ରୀ—କ'ଣ ସେ ମିଛ ?

Dr.—ତାକୁ କୁହାଗଲା, 'ଯୁଦ୍ଧ ଶେଷ ହେବା ପରେ ଇନ୍ଦ୍ରଜିତ ରାୟ ତାଙ୍କର କୃତିତ୍ୱ ପାଇଁ ପ୍ରମୋସନ ପାଇଛନ୍ତି । ତାଙ୍କର posting ହୋଇଛି ସୁଦୂର ଦରିଆ ସେପାରିରେ' ।

ତନୁଶ୍ରୀ—କିନ୍ତୁ ଏଇ ମିଛ ନେଇ କେତେଦିନ...?

Dr.—ମିଛର ମାୟା ମହଚକାର ଢଙ୍ଗ ମହଲ ଭିତରେ ବନ୍ଦୀ ରାଜକନ୍ୟା ଫେମେ ହଜେଇଦେଲା ତା'ର ବାସ୍ତବ ଜ୍ଞାନ । ସେ ହେଲା ମାନସିକ ରୋଗୀ । ତା' ପରେ ସେ ଚିକିତ୍ସା ପାଇଁ ଆସିଲା ମୋ ପାଖକୁ ! ସେଇଠୁ ସବୁ ଇତିହାସ ଆପଣ ଜାଣନ୍ତି ।

ତନୁଶ୍ରୀ—କିନ୍ତୁ ସେ ଚିକିତ୍ସାଳୟର ଶୃଙ୍ଖଳା, ଶାସନ ଓ ପାଚେରୀ ଡେଇଁ ଏଠିକି ଆସିଲା କେମିତି ?

Dr.—ଦରୁଆନ କମ୍ବା ନାଇଟ୍ ଓ୍ୟାଚରର ଅସାବଧାନତାର ସୁଯୋଗ ନେଇ ଏମିତି କେବେ କେମିତି ହେଇଥାଏ ।

ତନୁଶ୍ରୀ—ଆଚ୍ଛା, ଯଦିବା ସିଏ ଚାଲିଆସିଲା, ଆପଣମାନେ, ଆଉ ତା'ର ପରିବାରର ଲୋକେ ତାକୁ ଖୋଜି ବାହାର କରିବା ପାଇଁ ଚେଷ୍ଟା କଲେନି ?

Dr.—ଅନେକ ଚେଷ୍ଟା କରାହେଇଚି । Policeକୁ inform କରାହେଇଚି, ବିଭିନ୍ନ ଜାଗାକୁ wirrless କରାହେଇଚି, କେବଳ ଖବର କାଗଜରେ

ହଆନ୍ତେଇନ, ତା ପରିବାରର ଲୋକଙ୍କର ଆପତ୍ତି ଯୋଗ୍ୟ, ମାନସମ୍ମାନ ଯୋଗ୍ୟ ।

ଚିନ୍ମୟ—ଆଚ୍ଛା, କଣ ତା'ର ସ୍ୱାମୀର ଚେହେରା ସହିତ ମୋ ଚେହେରାର ଏମିତି କିଛି ସାମଞ୍ଜସ୍ୟ ଅଛି, ଯେଉଁଥିପାଇଁ କି ସେ ମୋତେ ଭୁଲରେ ତା'ର ସ୍ୱାମୀ ବୋଲି…

Dr.—ସତ କହିବାକୁ ଗଲେ ସେ ତା'ର ସ୍ୱାମୀକୁ ଭଲ ଭାବରେ ଦେଖିନ କି ଦେଖିବାର ସୁଯୋଗ ପାଇନ । ଚଉଠି ପୂର୍ବରୁ ବିବାହିତା ନବବଧୂ କେତେ ସମୟ ବା ତା ସ୍ୱାମୀକୁ ଦେଖିବାର ସୁଯୋଗ ପାଇଥାଏ ? ଦ୍ୱିତୀୟ କଥା ହେଲା, ମାନସିକ ରୋଗୀର କେତେକ କ୍ଷେତ୍ରରେ ଏକ ବିଚିତ୍ର ମାନସିକ ଅବସ୍ଥା ହୋଇଥାଏ ଯାହାକୁ ଚିକିତ୍ସା ଶାସ୍ତ୍ରରେ କହନ୍ତି "disavow phenomenon."

ଚିନ୍ମୟ—କ'ଣ ସେ ଅବସ୍ଥା ?

Dr.—ସେଇ ଅବସ୍ଥା ହେଉଛି, ରୋଗୀ ଏ ଅବସ୍ଥାରେ ଅପରିଚିତ ଲୋକ ଓ ଅପରିଚିତ ସ୍ଥାନକୁ ଅତି ପରିଚିତ ଏ ନିଜର ବୋଲି ମନେକରିଥାଏ ।

ଚିନ୍ମୟ—ଆଶ୍ଚର୍ଯ୍ୟ ! ଏହା ସମ୍ଭବ ହୁଏ କିପରି ?

Dr.—ମାନସିକ ରୋଗୀ ରୋଗର ଜଟିଳ ପ୍ରକ୍ରିୟାରେ ଯେଉଁ ରଙ୍ଗୀନ କଳ୍ପନାର ଜଗତ ତିଆରି କରିଥାଏ ସେଇ ଜଗତର ସ୍ଥାନକାଳପାତ୍ର ସହିତ ଯଦି ପୃଥିବୀର ବାସ୍ତବ କୌଣସି ଚରିତ୍ରର ମୁହଁ କେବେ ମିଶିଯାଏ, ତା'ହେଲେ ଏହି ଧରଣର ମାନସିକ ପ୍ରହେଳିକା ସୃଷ୍ଟି ହୋଇଥାଏ ।

ଚିନ୍ମୟ—ମାନସିକ ଚିକିତ୍ସା ଜଗତରେ ଏଇ ବିସ୍ମୟକର ପ୍ରହେଳିକା ବେଶ୍ ରୋମାଞ୍ଚକର । କିନ୍ତୁ ସେ ନାଟକର ନାୟକ ଭୂମିକାରେ ଛିଡ଼ାହୋଇ ମୋ ଅବସ୍ଥା କ'ଣ ହୋଇଛି ଦେଖନ୍ତୁ । ସମସ୍ତଙ୍କର ଉପହାସ, ସମସ୍ତଙ୍କର ଅବିଶ୍ୱାସ, ସବୁଠି ଅପମାନ । ମୁଁ ଶ୍ୱାସରୁଦ୍ଧ ହୋଇପଡ଼ୁଛି Dr. Acharya, ମୁଁ ଶ୍ୱାସରୁଦ୍ଧ ହୋଇପଡ଼ୁଛି ।

Dr.—I am sorry, ଚିନ୍ମୟବାବୁ I am sorry…

ଚିନ୍ମୟ—ଆପଣ ଦୟାକରି ମୋତେ ମୁକ୍ତ ଦେବେ ?

Dr.—ମୁଁ ଠିକ୍ ସେଇକଥା ଆପଣଙ୍କୁ ପଚାରିବାକୁ ଯାଉଥିଲି, ଯଦିଓ ସେଇଟା ଖୁବ୍ delicate…

ଚନ୍ଦ୍ରମୁ—Delicate କାହିଁକି ?

Dr.—ଛଟିମାର ଏଠି ରହିବା ପ୍ରାୟ ଦୁଇ ସପ୍ତାହ ହେଇଗଲା । ଅଭିନୟ କରିବାକୁ ଧାଇଁ ହଜିଯାଇନାହାନ୍ତି ତ ?

ଚନ୍ଦ୍ରମୁ—ନା, ବରଂ ସ୍ତ୍ରୀର ଦାବୀ ନେଇ ସିଏ ମୋ'ଠାରୁ ଯାହା ଚାହିଁଛି ମୁଁ ସେଥିରେ ତାକୁ ଆଘାତ ଦେଇଛି ।

Dr.—ଆପଣଙ୍କୁ ଅନେକ ଧନ୍ୟବାଦ, ଚନ୍ଦ୍ରମୁବାବୁ ! ଆଉ କେହି ହେଇଥିଲେ ଏ ଦୁର୍ବଳ ମୁହୂର୍ତ୍ତର ସୁଯୋଗ ନେଇ ହୁଏତ ଅନେକ କିଛି କରି ପାରିଥାନ୍ତା; ଆପଣ ମହାନ୍ ।

ଚନ୍ଦ୍ରମୁ—ନା, ମହାନ୍ ହେଇ ମୁକୁଟ ପିନ୍ଧିବା ମୋର ଦରକାର ନାହିଁ । ଆପଣ ତାକୁ ଏଠୁ ନେଇଯାଆନ୍ତୁ, ଶୀଘ୍ର ନେଇଯାଆନ୍ତୁ । Please…

Dr.—ମୁଁ କଥା ଦଉଛି, ନେଇଯିବି ।

ଚନ୍ଦ୍ରମୁ—( ବିବ୍ରତ ହୋଇ ) ନା, ନେଇଯିବେ ନୁହେଁ; କୁହନ୍ତୁ, ଆଜି…ଆଜି ଏଇ ମୁହୂର୍ତ୍ତରେ ନେଇଯିବେ ।

Dr.—ଆପଣ ବିବ୍ରତ ହୁଅନ୍ତୁନି । ନାଟକର ଶେଷ ହୋଇନି । ଏଇ ଶେଷ ଅଙ୍କ ବୋଲି ମନେ କରନ୍ତୁ । ଏବେ ବି ନାୟକ ଭୂମିକା ଆପଣଙ୍କର । ବର୍ତ୍ତମାନ clapping ନ ନେଇ ଚାଲିଯିବେ !

ଚନ୍ଦ୍ରମୁ—( ବିବ୍ରତ ହୋଇ ) Clapping ! ଆଉ ମୋର ଧୈର୍ଯ୍ୟ ନାହିଁ, Dr. Acharya, ଆପଣଙ୍କ ନାଟକର ନାୟକଙ୍କୁ ମଞ୍ଚରୁ ବାଦ୍ ଦେଇଦିଅନ୍ତୁ ।

Dr.—ନା ଚନ୍ଦ୍ରମୁବାବୁ ! ତା ସମ୍ଭବ ନୁହେଁ । କାରଣ, ମାନସିକ ରୋଗୀ ପାଇଁ ମାନସିକ ଚିକିତ୍ସାଳୟର ରୁଟିନବନ୍ଧା ନିୟମ କାନୁନ୍,ଔଷଧ, ଇଲେକ୍ଟ୍ରିକ୍ ସକ୍ ଷ୍ଟିମତ ଏକ ବାଧ୍ୟବାଧକତା କହିଲେ ଚଳେ । ସେଇଥିପାଇଁ ସେମାନେ ସୁସ୍ଥ ହୋଇଯିବାକୁ । ଛଟିମା ଯେତେବେଳେ ତାକୁ ଗ୍ରହଣ କରିଆସିଛି ତାକୁ ହଠାତ୍ ଫେରେଇନେବା ସହଜ ନୁହେଁ କି ସମ୍ଭବ ନୁହେଁ ।

ଚିନ୍ମୟ-- ( ବ୍ୟସ୍ତବ୍ୟସ୍ତ ହୋଇ ) ଆପଣ ଜୋର କରି ନେଇଯାଆନ୍ତୁ ।

Dr.—ନା, ଜୋରକରି ନବାକୁ ମୁଁ ଚାହେଁନା ।

ଚିନ୍ମୟ—କିନ୍ତୁ, କାଲି ଗୁଡ଼ୁ ବାପା ପଅରଦିନ ଆସିବେ ।

Dr.—ଆସନ୍ତୁ, ନା···

ଚିନ୍ମୟ—ଆପଣ ଜାଣିନାହାନ୍ତି, Dr. Acharya, ଏଇ ଭୂଲର ଶିକାର ହୋଇ ଚନ୍ଦିମାକୁ ତାଙ୍କ ବୋହୂଙ୍କରୂପରେ ସେ ଗ୍ରହଣ କରିନେଇଛନ୍ତି । ସେଥିପାଇଁ ସେ ଆସିବେ ବାଜା ବାଣ, ବେଶଣି ନେଇ ତାକୁ ଘରକୁ ନେଇଯିବାକୁ ।

Dr.—( ଆଶ୍ୱସନା ଦେଇ ) ଅଛି, ଠିକ୍ ଅଛି, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣଙ୍କ ବାପା ଆସିଲେ କେମିତି ଭାବରେ ତାଙ୍କୁ ବୁଝେଇବାକୁ ପଡ଼ିବ । କେମିତି କ'ଣ କରିବାକୁ ହବ, ମୁଁ ତା'ର plan କରୁଛି ।

ଚିନ୍ମୟ - କ'ଣ ଆଉ କରିବେ ? ଆଜି ସୋମବାର, ମଝିରେ ଗୋଟାଏ ଦିନ । ବୁଧବାର ସକାଳୁ ଦେଖିବେ ଏଠି ଗୋଟାଏ ହୁଲସ୍ଥୁଲ କାଣ୍ଡ ।

[ ଗୋଟାଏ ଗହଳି ଲାଗିଛି । ବାଜା, ବାଣ, ବେଶଣି । ହଠାତ୍ ମଞ୍ଚ ଅନ୍ଧାର ହୋଇଯାଇଛି । ଅନ୍ଧାର ଭିତରେ ଶୁଣାଯାଉଛି ବାଣ ଫୁଟିବା ଓ ବାଜା ବାଜିବାର ଶବ୍ଦ । ଗୁମାସ୍ତା ସାଧୁଆକୁ ବେକ ପାଟିରେ କହୁ କହୁ ଆସିଛନ୍ତି । ପଛରେ ସାଧୁଆ]

ଗୁମାସ୍ତା--ଆବେ ହେ ସାଧୁଆ ! ତୁ ସେ ବାଜାବାଲାଙ୍କୁ ଚନ ନ ପକେଇ ଚାହା ଦେଇଚୁ, ସେମାନେ ମୋଟେ ଛୁଉଁନାହାନ୍ତି ।

ସାଧୁଆ—କଣ ହେଲା ? ଚନ ପଡ଼ିନାହିଁ !

ଗୁମାସ୍ତା—ପଡ଼ିବ କୋଉଠୁ ? ଅଧେ ଚନ ତୁ'ତ ପାଟିରେ ପକେଇଦେଇଥିବୁ ।

ସାଧୁଆ—ଚନଗୁଡ଼ା କୋଉ ଅପୂର୍ବ ଯେ ମୁଁ ପାଟିରେ ପକେଇଦେବି ! ସେଗୁଡ଼ାକ ଲୁଣ ପକେଇ ଚାହା ଖାଇବା ଲୋକ, ଏଠି ଆସି କ'ଣ ନା ଚାହାରେ ଚନ ଦେଇନ !

ଗୁମାସ୍ତା--ହଇ ଗୋଟାକର କଥା, ତାଙ୍କୁ ଅଶାନ୍ତ କର ଲାଭ କଣ ? ଟିକିଏ କ'ଣ ହେଲେ ବାଜା ଛାଡ଼ିଦେଇ ଚାଲିଯିବେ ।

ସାଧୁଆ—ଘ.ଅ.ନ୍ତୁ ମ । ବାଜାବାଲା ନ ହେଲେ ଯିମିତ କାମ ଅଚଳ ହେଇଯାଉଚ ।
ମୁଁ ପଗ୍ ଏକା ଶଙ୍ଖ ଫୁଙ୍କି ଫୁଙ୍କି ଗାଆଁରେ ସୁଅର ପାଲିଙ୍କି ନେଇ ଗୁଡ଼ଦେଇ ଆସିବ ।

ଗୁମ.ସ୍ତା (ବ୍ୟସ୍ତ ହେ'ଇ) ଓଃ ହୋ, ଏତେ କଥାରୁ କଥଣ ମିଳବ ! ରୁ' ଗଲୁ, ତାଙ୍କୁ ଟିକେ ଟିକେ ଚନ ଦେଇଆସିବୁ ।

ସାଧୁଆ—ଚନ କ'ଣ ଅଉ ଅଛୁ ? ଅଧେ ତ ଗୁବଲ୍ଡ ହେଇଥିଲା । ଆଉ ଅଧେ ଗ୍'ରେ ପଡ଼ିଥିଲା । ତା'ଛଡ଼ା ଗଲା, ଆଇଲା, କୁଣିଆ, ମଇଷ କ'ଣ କମ ! ଦଣ୍ଡରେ ପଗ୍ ନୋଟକ ମେଞ୍ଚେ ମେଞ୍ଚେ ଚନ ମାଗୁଛନ୍ତି ।

ଗୁମ.ସ୍ତା—ହଇରେ ! ସବୁ ଖାଇ ଖାଇ ତତେ ଆଉ କଛୁ ଅଣ୍ଟୁନ !

ସାଧୁଆ—ମତେ ଆଉ କଛୁ ମିଳୁନ, ମୁଁ ଚନ ଗୁଣ୍ଟୁଥିଲି, ଆଉ···ସବୁବେଳେ ଖାଲି ଖାଇଗଲା, ନେଇଗଲା···ମୁଁ ଆଉ ଏ ଘରେ ରହିବନ ।

ଗୁମାସ୍ତା—ତୋର ରହିବା କଛୁ ଦରକାର ନାହିଁ । ବୋହୂ ସାଆନ୍ତାଣୀ ଗାଁଆକୁ ଯାଉଚନ୍ତି । ରୁ ତାଙ୍କ ସାଙ୍ଗରେ ଗାଆଁକୁ ଯାଆ । ତୋର ଏଠି ରହିବା କଛୁ ଦରକାର ନାହିଁ । (ପ୍ରବେଶ କଲେ ପାଇକସ୍ୱ)

ପାଇକସ୍ୱ—(ଗୁମାସ୍ତା ପ୍ରତି) କହୋ, ରୁମେ ଏଠି କଣ ସାଧୁଆ ସାଙ୍ଗରେ ଘାଟି କରୁଚ ? ସିଆଡ଼େ ପଗ୍ କ ହିରେ କ'ଣ କାମ ବାକ ପଡ଼ିଛୁ ।

ଗୁମାସ୍ତା—ନାହିଁ ଆଜ୍ଞା, ସେ ବାଜାବାଲାଙ୍କ ଗ୍ଦାରେ ସାଧୁଆ ଚନ ଦେଇନ ଯେ ମୁଁ ତାକୁ କହୁଥିଲି, ଯା ଦେଇଆସିବୁ ।

ପାଇକସ୍ୱ—ହଁ, ଯିଏ ଯାହା ମାଗୁଛୁ ତାକୁ ଦିଅ, ସମସ୍ତେ ମନ ଖୁସିରେ ଖାଆନ୍ତୁ । ଦେଲେ ଦେଲେ ମୋର କ'ଣ ସରିଯାଉଛୁ ? ଲକ୍ଷ୍ମୀ ମା ମୋର ଆସିଯାଇଛୁ । ମୋ ଭଣ୍ଡାର ଆଉ ଖାଲି ହେବନ । ତମେ ଯାଅ, ସେ ବାଜାବାଲାଙ୍କୁ କୁହ, ଭଲକରି ବାଜା ବଜାନ୍ତୁ । ଜଣକେ ଖଣ୍ଡେ ଲେଖାଏଁ ଲୁଗା ଦିଆଯିବ ।

ଗୁମାସ୍ତା—(ଖୁସି ହୋଇ) କେମନ୍ତ ! ହଉ ହଉ, ମୁଁ ଆଜ୍ଞା ଯାଉଚି, କହିଦେବ । (ଗ୍ଲିଯାଉଥିଲେ)

ପାଇକରାୟ—( ଡାକନ୍ତି ) ହଁ ଶୁଣ, ଶୁଣ । ସେ ଗାଡ଼ିଟା ସକାସକ କାମ ସରିଲା କି ନାହିଁ, ଦେଖ । ସଅଳ ବାହାରିବା । ବାଟ ପାଖରୁ କାର୍ ଟା'ତ ଆଉ ଗାଁ ଯାଏ ନେ ଯିବନାହିଁ । ରାସ୍ତା ପାଖରୁ ଥୋଡ଼ାଏ ବାଟ, ଚଲ ଗୋହିରୀ, ସେଠି ସୁଆର ପାଲିଙ୍କିବାଲା ଜଗି ବସିଥିବେ ।

ଗୁମାସ୍ତା—ହଁ ଆଜ୍ଞା, ଡେରି କରି ଲାଭ କଣ ? ବୋହୂ ସାଆନ୍ତାଣୀ ଯିବେନିକି, ଡେରି ହେଲେ ଶେଷକରେ ଆଉଟି ପାଉଟି ହେଇଯିବ, ମୁଁ ଯାଏଁ ।

( ଚାଲିଗଲେ )

ପାଇକରାୟ—( ସାଧୁଆ ପ୍ରତି ) ତୁ ଠିଆ ହେଇଛୁ, କାହିଁକି ? ସେମାନେ ସବୁ ଲୁଗାପଟା ପିନ୍ଧି ସଜ ହେଲେଣି କି ନାହିଁ ଦେଖ୍ ।

ସାଧୁଆ—ହଁ ଆଜ୍ଞା, ଦେଈ ତାଙ୍କୁ ଚନ୍ଦନପାଟୀ ପିନ୍ଧେଇଦଉଥିଲେ ।

ପାଇକରାୟ—ଯା, ଝିଅକୁ କହିବୁ, ସବୁତକ ଗହଣା ବୋହୂକୁ ପିନ୍ଧେଇଦବ ।

ସାଧୁଆ—ଆଜ୍ଞା, ଯାଉଚି ।

[ ଚାଲିଯାଉଛି । ସୁବମଲ ପ୍ରବେଶ କରୁଛି ]

ପାଇକରାୟ—କ'ଣ ? ଗାଡ଼ିକଥା କ'ଣ ହେଲା ?

ସୁବମଲ—ଆଜ୍ଞା, ଗାଡ଼ି ଠିକ୍ ହେଇଯାଇଛି ।

ପାଇକରାୟ—କେତେ ଖଣ୍ଡ ?

ସୁବମଲ—ଷୋଳ ଖଣ୍ଡ ।

ପାଇକରାୟ—ଏତେ ଲୋକ, ଗାଡ଼ିରେ ଜାଗା ହବ ତ ?

ସୁବମଲ—ଯେତେଜଣ ପାରିବେ ଯିବେ । ଯେଉଁମାନେ ଯାଇ ନ ପାରିବେ ବସ୍‌ରେ ଯିବେ ।

ପାଇକରାୟ—ନା, ବରଂ ତମେ ଯାଇଁ ଗୋଟିଏ ବସ୍ reserve କରିଦେଇଆସ, ସମସ୍ତେ ସେଥିରେ ଚାଲିଯିବ ।

ସୁବମଲ—ହଁ ଆଜ୍ଞା, ମୁଁ ସେଇ ବ୍ୟବସ୍ଥା କରିଦଉଚି ।

( ପାଇକରାୟ ଭିତରକୁ ଚାଲିଯାଉଛନ୍ତି )

ସୁବମଲ—( ଡାକ ପକାଉଛନ୍ତି ) ସାଧୁଆ···ସାଧୁଆ ! ( ମହାରକା ପ୍ରବେଶ କରୁଛି)

ମହାରକା—କେତେଥର କହିବ, ସାଧୁଆ ନାହିଁ, ତାର ଛୁଟିର କାମ ! ଘଣ୍ଟାକୁ ଘଣ୍ଟା ଆସି ସାଧୁଆକୁ ଡାକ ପକାଉଚ, କ'ଣ ଦରକାର ଏକାଥରେ କହୁନ ?

ଖାତଘର

ସୁବିମଲ—କହୁଚ ପାଖକୁ ଆସ ।

ମାଳବିକା—କ'ଣ, ପାନ ସରିଯାଇଚି ? ଆଣି ଦେବି ?

ସୁବିମଲ—ନା ।

ମାଳବିକା—ଆଉ କ'ଣ ସିଗାରେଟ୍ ?

ସୁବିମଲ—ନା ।

ମାଳବିକା—ଆଉ କ'ଣ ?

ସୁବିମଲ—( ସ୍ତ୍ରୀଆଡ଼କୁ ଚାହିଁ ଅପ୍ରକାଶ୍ୟ ଭାଷାରେ କିଛି ପ୍ରକାଶ କରିବାକୁ ଚେଷ୍ଟା କଲେ )

ମାଳବିକା—କ'ଣ ଦରକାର କହୁନା କାହିଁକି ?

ସୁବିମଲ—( ତରତର ) ଏ ଦୁ'ଦିନ ହେଲା ଯୋଉ ଲୋକଗହଳି । ତମର ଟିକେ ଦେଖା ମିଳୁନି ।

ମାଳବିକା—କାହିଁକି ଦେଖା ହବ ? କ'ଣ ଦରକାର ?

ସୁବିମଲ—ସେଇଟା କ'ଣ ତୁମେ ନିଜେ ବୁଝିପାରୁନା ?

ମାଳବିକା—ଛି, ତୁମକୁ ଲାଜ ନାହିଁ !

ସୁବିମଲ—ମୁଁ କ'ଣ କରିବ ? ଏ ଗହଳି ଭିତରେ ମୋ ମୁଣ୍ଡ ଖରାପ ହୋଇଗଲାଣି । ତମକୁ ଖାଲି ଡକେଇ, ଟିକେ କଥାବାର୍ତ୍ତା କରିବାପାଇଁ ସାଧୁଆ 'ମୋ' ଠଉଁ କେତେ ବକ୍ସିସ୍ ନେଲଣି ଜାଣିଚ ? ଥରକୁ ଟଙ୍କାଟିଏ ।

ମାଳବିକା—ଇସ୍, ତମେ ସାଧୁଆକୁ ଟଙ୍କାଏ ଲେଖାଏଁ ଦେଇ···ଏମିତି ମୋଟରେ କେତେ ଦେଲଣି ?

ସୁବିମଲ—ମୋର ମନେ ନାହିଁ ।

ମାଳବିକା—କେତେ ଦେଇଚ ତା'ବି ମନେ ନାହିଁ ?

ସୁବିମଲ—ମନେରଖିବା କିଛି ଦରକାର ନାହିଁ ।

ମାଳବିକା—ଏଁ କଣ କହୁଚ ? ମନେ ରଖିବା ଦରକାର ନାହିଁ ।

ସୁବିମଲ—ମୋତେ କ'ଣ ମନେହଉଚି ଜାଣ, ମାଳବି ? ସତେ ଯେମିତି ଆଉ ଥରେ ସେଇ କଲେଜଜୀବନକୁ ଫେରିଯାଇଚି ।

ମାଳବିକା—କଲେଜ ଜୀବନକୁ ?

ସୁବିମଲ—ହଁ, ଲେଡ଼ିଜ୍ ହଷ୍ଟେଲ ଗେଟରେ···

ନୀହାରିକା—ଲେଡ଼ିଜ୍ ହଷ୍ଟେଲ ଗେଟ୍‌ରେ ! !

ସୁବିମଳ—ଦରୁଆନକୁ ବକ୍‌ସିସ୍ ନଦେଲେ, ଏମିତ ଘଣ୍ଟା ଘଣ୍ଟା ଅପେକ୍ଷା କରିବାକୁ ପଡ଼େ ।

ନୀହାରିକା—ଇସ୍ ତମେ ତାକୁ ବି ବକ୍‌ସିସ୍ ଦେଉଥିଲ ? ନା, ତମକୁ ଆଉ ପାଇବନି । ତମ ହାତରେ ପଇସାପତ୍ର ଦେଲେ ନା, ତମେ ଖାଲି ଲୋକଙ୍କୁ ବକ୍‌ସିସ୍ ଦେଇ ସବୁ ଶେଷ କରିଦେବ ।

( ସାଧୁଆ ଡାକି ଡାକି ଆସିଛି ଭିତରୁ )

ସାଧୁଆ ( ଭିତରୁ ) 'ଦେଈ', 'ଦେଈ' !

ନୀହାରିକା— ହେଇଟି, ସାଧୁଆ ଅସିଲାଣି, ମୁଁ ଯାଉଛି ! ( ଘର ଭିତରକୁ ଚାଲିଗଲେ )

ସୁବିମଳ—ହଁ, ମୁଁ ବି ଯାଉଚି, ମଟର କଥା ବୁଝେଁ । ( ଚାଲିଯାଉଥିଲେ )

ସାଧୁଆ - ( ପ୍ରବେଶ କରି ) ଚାଲିଯାଉଚନ୍ତି କୁଆଡ଼େ ? ମୋ ବକ୍‌ସିସ୍‌ଟା ଦେଇ ଯାଆନ୍ତୁ । ଆଉ ଟିକଏ ହେଇଥିଲେ ମୋ ବକ୍‌ସିସ୍‌ଟା ବୁଡ଼ିଥିଲା, ଆଉ···

ସୁବିମଳ—ଓଃ ହୋଃ; ତୁ ଗୁଣ୍ଡବୁଜ ଦେଖୁଚି ।

[ ପକେଟରୁ ଟଙ୍କା କାଢ଼ି ତା ହାତକୁ ପକେଇଦେଇ ଓ ବାହାରକୁ ଚାଲିଗଲେ । ସାଧୁଆ ଟଙ୍କା ଧରି ସାଲ୍ୟୁଟ ମାରି ଚାଲିଗଲା ]

—ଅନ୍ଧାର—

[ ତନ୍ମୟଙ୍କୁ ଟାଣି ଟାଣି ଅଣି ଘର ଭିତରେ ପ୍ରବେଶ କଲେ ତା'ର ବନ୍ଧୁମାନେ । ଧସ୍ତା ଧସ୍ତିରେ ତା'ର ଜାମା ଚିରିଯାଇଛି ]

ତନ୍ମୟ—( ବ୍ୟସ୍ତ ହୋଇ ରାଗି ) ମୁଁ ଯୁଆଡ଼େ ଗଲି, ତମର ମୋ ପଛେ ପଛେ ଗୋଡ଼େଇବା କ'ଣ ଦରକାର ? ତମେମାନେ ମୋ କଥା କିଛି ବୁଝୁଣ ? ବୁଝିଚ ? ମତେ ଟିକେ କାନ୍ଦିବାକୁ ଦେଇଚ ?

ଶିଶିର—କ'ଣଟା କାନ୍ଦିବୁ ? ଆବେ, କାନ୍ଦିବୁ କ'ଣ ?

ପ୍ରଶାନ୍ତ—କ'ଣ କଥା ଅପସନ୍ଦ ହେଉଛି ?

ଅବନୀ—ଅପସନ୍ଦ କାହିଁକି ହବ ?…କାଳୀ, ଟେଗୀ, ଗ୍ରେଟୀ, ମୋଟୀ, ଲଣ୍ଡୀ, ଗୋଦଣ୍ଡୀ, ଚେପଟାନାକୀ କିଛି ତ ନୁହେଁ; ଆଉ ଅପସନ୍ଦଟା କେଉଁଠି ?

ଶିଶିର—ଆଚ୍ଛେ, ସେକଥା କାହିଁ ପଚାରୁଛୁ ? ତାକୁ ପଚାର, ତାର ଯଦି ବାହା ହେଲାକୁ ଗଣ୍ଡଗୋଳ କରିବାର ଇଚ୍ଛା ଥିଲା, ତେବେ ଝିଅଟାକୁ ଆଶା ଦଉଥିଲା କାହିଁକି ?

ଚିନ୍ମୟ—କିଏ କହୁଛି ମୁଁ ତାକୁ ଆଶା ଦେଉଛି ?

ପ୍ରଶାନ୍ତ—ଆଉ ଆଉ, ତୁ ସେଗୁଡ଼ା ଆଉ କହନା । ତୁ ଭାବୁଚୁ, ଜୀବନରେ ତୁଇ ଏକା ପ୍ରେମ କରିଚୁ…

ଅବନୀ—ନା, ଚିନ୍ମୟର କହିବା କଥା ଠିକ୍ । ଆମେସବୁ ପ୍ରେମ କରିଚୁ, କିନ୍ତୁ ତା' ଭଳିଆ କେହି କରିନୁ !

ଶିଶିର—Exactly ! କାହିଁ, ଆମ ଘରେ ତ କେହି ଆସି ଏମିତି ଜୋରଜୁଲମ କରୁନ !

ପ୍ରଶାନ୍ତ—ବରଂ ଆମେ ପଛରେ ଗୋଡ଼େଇ, ଚିଠି ଲେଖି, ମନେ ମନେ ଝାସେ…

ଚିନ୍ମୟ—ତମମାନଙ୍କ ବାଜେ କଥା ଶୁଣିବାକୁ ମୋର ସମୟ ନାହିଁ । ଦୟାକରି ମୋତେ ଛାଡ଼ିଦିଅ ।

ଅବନୀ—କୁଆଡ଼େ ଯିବୁ ?

ଚିନ୍ମୟ—Mental Hospital !

ଶିଶିର—କ'ଣ ହେଲା ? Mental Hospital !

ଚିନ୍ମୟ—ଜରୁରୀ କାମ ଅଛି ।

ପ୍ରଶାନ୍ତ—ତୋର ତ ସେଠିକି ଗଲାଭଳି ଜରୁରୀ ଅବସ୍ଥା କିଛି ହୋଇନି ।

ଚିନ୍ମୟ—( ରାଗିଯାଇ ) ସେକଥା ତମେମାନେ କ'ଣ ବୁଝିବ ? ସେଠି ଜଣେ ଡାକ୍ତରଙ୍କ ପାଖରେ ମୋର ଜରୁରୀ କାମ ଅଛି ।

ଅବନୀ—ଜରେ, ଆଜି ଭଲ ଦିନରେ ତୋର Mental Hospital ଡାକ୍ତର ପାଖରେ କି କାମ ?

ଚିନ୍ମୟ—( ବ୍ୟସ୍ତହୋଇ ) ଓଃ କ'ଣ କାମ ମୁଁ ତମକୁ କହିପାରିବନି ।

[ ସ୍କୁଲଯାଉଥିଲି । କୋଉଠିକର ସମସ୍ତେ ତାକୁ ଧରି ଅଟକେଇ ରଖିଛନ୍ତି ]

ଓଃ ମତେ ଛାଡ଼, ମତେ ଛାଡ଼ ( ଚିନ୍ମୟ ଚିତ୍କାର କରି ଉଠିଛି )

ଶିଶିର—ନା, ଆଜିକାଲି ଦିନରେ ତୁ ବୁଆଢ଼େ ଯାଇପାରିବୁନି ।

[ ଏଇ ପାଟିଗୋଳ ଭିତରେ ବ୍ୟସ୍ତ ହୋଇ ପ୍ରବେଶକଲେ ମାନସିକ ଚିକିତ୍ସାଳୟର ପ୍ରଫେସର Dr. Acharya ]

Dr.—କ୍ଷମା କରିବେ ଚିନ୍ମୟବାବୁ, ମୋର ଟିକିଏ ଡେରି ହୋଇଗଲା । କ'ଣ କରିବି, ସେଠି ଯେଉଁ ଜଞ୍ଜାଳ···

ଚିନ୍ମୟ—ବାଧ୍ୟହୋଇ ମୁଁ ଆପଣଙ୍କ ପାଖକୁ ଯିବାକୁ ବାହାରିଛି, ଏମାନେ ମତେ ଛାଡ଼ୁନାହାନ୍ତି । ଆପଣ ଆସିଯାଇଛନ୍ତି, ଏଥର ଏମାନଙ୍କୁ ସବୁକଥା ବୁଝେଇ-ଦିଅନ୍ତୁ । ( ସାଙ୍ଗମାନେ ଚିନ୍ମୟଙ୍କୁ ଛାଡ଼ିଦେଲେ )

Dr.—ଆପଣଙ୍କ ବାପା ଆସିଯାଇଛନ୍ତି ତ ? ଡାକନ୍ତୁ, ମୁଁ ତାଙ୍କୁ ସବୁ କଥା ବୁଝେଇଦେବି ।

ସମସ୍ତେ—କ'ଣ ହେଇଚି, ଆଜ୍ଞା ?

Dr.—ମନେହେଉଛି ଆପଣମାନେ ସମସ୍ତେ ଚିନ୍ମୟବାବୁଙ୍କର ବନ୍ଧୁ,

ପ୍ରଶାନ୍ତ—ଆଜ୍ଞା, ନିଶ୍ଚୟ । ଏକାବେଳକେ ଅନ୍ତରଙ୍ଗ ।

Dr.—କିନ୍ତୁ ଆପଣମାନେ ଚିନ୍ମୟବାବୁଙ୍କ ପାଇଁ କ'ଣ କରିଛନ୍ତି ?

ଅବନୀ—କଣ କରିଚୁ, ମାନେ ? ସବୁ ଯୋଗାଡ଼ କରିଚୁ ?

ଶିଶିର—ସୁଆର, ପାଲିଙ୍କି···

ପ୍ରଶାନ୍ତ—ଲାଇଟ, ବାଣ···

ଅବନୀ—ବ୍ୟାଣ୍ଡପାର୍ଟି, ତେଲିଙ୍ଗି ବାଜା, ନାଇଚଆ ନାଚ···

Dr.—ଏ ସବୁର କିଛି ଦରକାର ନାହିଁ । ( ସମସ୍ତେ 'ଆଁ' କରି ରହିଗଲେ )

Dr.—ହଁ, ଏ ସବୁ ଖାଲି ମିଛ, ଦୁହସନ ।

ଶିଶିର—( ବିସ୍ମିତ ହୋଇ ) ଆପଣ କ'ଣ କହୁଛନ୍ତି ?

Dr.—ମୁଁ ଯାହା କହୁଛି ଆପଣମାନେ ଶୁଣିବାକୁ ପ୍ରସ୍ତୁତ ଅଛନ୍ତି ତ ? ମୋ କହିବାର ଅର୍ଥ ହେଉଛି, କୌଣସି ଗୁରୁତ୍ୱପୂର୍ଣ୍ଣ କଥା ଶୁଣିବା ଭଳି ଅବସ୍ଥାରେ ଆପମାନେ ଅଛନ୍ତି ତ ?

ସମସ୍ତେ—( ବିସ୍ମୟରେ ) ଗୁରୁତ୍ୱପୂର୍ଣ୍ଣ ! !

( ପାଇକରାୟ ପଶିଆସିଛନ୍ତି କହି କହି )

ପାଇକରାୟ—ଓଃ ହୋ, ସିଆଡ଼େ ବାଜାବାଲା ପାଟିଭୁଣ୍ଡ କରିବାକୁ ଆରମ୍ଭ କରିଦେଲେଣି । ତୁମେମାନେ ଡେରି କରୁଚ କାହିଁକି ?

Dr.—ଆପଣ ନିଶ୍ଚୟ ଚନ୍ଦ୍ରାର ବାପା ?

ପାଇକରାୟ—ଆପଣ ? ?

Dr.—ମୁଁ Dr. Acharya, Mental Hospitalର Superintendent.

ପାଇକରାୟ—ନମସ୍କାର ।

Dr.—ନମସ୍କାର ।

ପାଇକରାୟ—ଆପଣ ଏଠି ?

Dr.—ହଁ, ଆପଣଙ୍କର ଏଇ ବିରାଟ ଆନନ୍ଦ ଉତ୍ସବରେ ଜଣେ ଅନିମନ୍ତ୍ରିତ ଅତିଥି ।

ପାଇକରାୟ—ନା, ସେମିତି ଭାବନ୍ତୁ ନାହିଁ । ବରଂ ମୋର ଭାଗ୍ୟ ଯେ ଏମିତି ଦିନରେ ଆପଣ ମୋ ଘରକୁ ଆସିଚନ୍ତି । ଆସନ୍ତୁ, ଭିତରକୁ ଆସନ୍ତୁ, ବୋହୂକୁ ଦେଖିବେ ।

Dr.—ମତେ କ୍ଷମା କରିବେ, ଆପଣଙ୍କର ଏଇ ଉତ୍ସବରେ ଭାଗ ନବାର ଅଧିକାର ମୋର ନାହିଁ । ବରଂ ଆପଣଙ୍କର ଏଇ ବାଣ ରୋଶଣିର ରଙ୍ଗୀନ ଆକାଶରେ ମୁଁ ଆଜ ଗୋଟାଏ ଧୂମକେତୁ ବୋଲି ଭାବିପାରନ୍ତି ।

ପାଇକରାୟ—( ବିସ୍ମୟରେ ) ଧୂମକେତୁ ! ! !

Dr.—ହଁ, ଯାହା ମୁଁ କହିବାପାଇଁ ଆସିଛି, ତାହା ଏକ ନିଦାରୁଣ ସତ୍ୟ ।

ପାଇକରାୟ—କ'ଣ ଏମିତି ଆପଣ କହିବାପାଇଁ ଆସିଚନ୍ତି ? କୁହନ୍ତୁ, ଶୀଘ୍ର କୁହନ୍ତୁ ।

ଶିଶିର }
ପ୍ରଶାନ୍ତ } କହନ୍ତୁ ନା, Please !
ଅବନୀ }

Dr.—( ଗମ୍ଭୀର ହୋଇ ) ଆପଣମାନେ ସମସ୍ତେ ମିଛି ଗୋଟାଏ ମସ୍ତବଡ଼ ଭୁଲ କରିବାକୁ ଯାଉଛନ୍ତି ।

ପାଇକରାୟ—( ବିସ୍ମୟରେ ) କ'ଣ ସେ ଭୁଲ ?

Dr. —ଯାହାକୁ ଆପଣ 'ବୋନ୍ଧୁ' ବୋଲି ଗ୍ରହଣ କରି ନେଇଛନ୍ତି, ତନ୍ମୟବାବୁଙ୍କ ସାଙ୍ଗରେ ତାଙ୍କର କୌଣସି ସମ୍ପର୍କ ନାହିଁ ବା ନ ଥିଲା ।

ପାଇକରାୟ—( ବିସ୍ମିତ ହୋଇ ) ଆପଣ କ'ଣ କହୁଚନ୍ତି ?

Dr.—ହଁ ସେ ଏକ ମାନସିକ ରୋଗୀ । ମାନସିକ ଚିକିତ୍ସାଳୟରୁ ସେ ପଳାଇ-ଆସିଛି ।

ପାଇକରାୟ—( ମର୍ମାହତ ହୋଇ ) ନା, ଏହା ମିଛ । ଏହା ହୋଇପାରେ ନା !

( ଚିତ୍କାର କରି ଉଠିଛନ୍ତି )

ଅନ୍ୟମାନେ—No, Impossible !

Dr. —( ହସି ହସି ) ମୁଁ ଜାଣେ, ମୋ କଥା ଆପଣମାନେ ବିଶ୍ୱାସ କରିବେନି ! ସେଇଥିପାଇଁ ମୁଁ mental hospitalର ରେକର୍ଡ଼ପତ୍ର ନେଇ ଆସିଛି, ଆପଣମାନେ ଦେଖିପାରନ୍ତି ।

[ ହାତରେ ଧରିଥିବା ଫାଇଲଟିକୁ ଖୋଲି ଦେଖେଇଲେ । ତନ୍ମୟ ବ୍ୟତୀତ ସମସ୍ତେ ସେହି ଫାଇଲ ଉପରେ ଝୁଙ୍କି ପଡ଼ିଲେ ଦେଖିବାପାଇଁ । ବାହାଘରର ସାହାନାଇ ଓ ରୋଷଣି, ବାଣ ଫୁଟିବାର ଶବ୍ଦ ଖୁବ୍ ଜୋରରେ ଶୁଭୁଥାଏ । ପାଇକରାୟ ଫାଇଲ ଦେଖି ହତାଶ ହୋଇ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ । ଅନ୍ୟ ତିନିଜଣ ମୂକ ହୋଇ ବିଭିନ୍ନ ଭଙ୍ଗୀରେ ଛିଡ଼ା ହୋଇଗଲେ ]

Dr.—( ପାଇକରାୟଙ୍କ ପିଠି ଆପୁଡ଼ାଇ ) ଅପଣ ଏମିତି ହୁଅନ୍ତୁନି, Mr. ପାଇକରାୟ ! ଧୈର୍ଯ୍ୟ ଧରିବାକୁ ହବ । ନ ହେଲେ ମୋ କର୍ତ୍ତବ୍ୟ, ମୁଁ କରିବ କେମିତି ?

ତନ୍ମୟ—କର୍ତ୍ତବ୍ୟ ?

Dr.—ମୁଁ ତାକୁ ଏଠୁ ନେଇଯିବି । ସେଇ ଗାଡ଼ିରେ ସେ ଯିବ । ସେଣିକି କଲବ. ବାଜା ବାଜିବ, ଡଟିମା ଜାଣିବ, ସେ ଗାଆଁକୁ ଯାଉଛି, କିନ୍ତୁ mental hospital ଆଗରେ ମୁଁ ଜୋରକରି ତାକୁ ଗାଡ଼ିରୁ ଓହ୍ଲାଇ ନେଇଯିବି ।

ତନ୍ମୟ—ଓଃ, ଆଉ ଏ ସବୁ ଅଭିନୟ କ'ଣ ଦରକାର ?

Dr.—ଦରକାର ଅଛି, ତନ୍ମୟବାବୁ ! ଆପଣ ସେସବୁ ବୁଝି ପାରିବେନି । ତା'ର ସ୍ୱପ୍ନ ଯଦି ହଠାତ୍ ଭାଙ୍ଗି ଯାଏ, ସେ react କରିବ, ସେ violent ହବ । ତା ଅପେକ୍ଷା ଏଇ ଭଲ । ଆପଣ ଖାଲି ମତେ ଟିକେ ସାହାଯ୍ୟ କରନ୍ତୁ ।

ପା'ଇକରାୟ—( ଚକ୍କାର କରି ) ନା, ତା ହେଇପାରିବନି । ସେ ମୋ 'ବୋହୁ' । ସେ ମୋ 'ଲକ୍ଷ୍ମୀ' । ମୁଁ ତାକୁ ଯିବାକୁ ଦେବିନି । ମୁଁ ତାକୁ ଯିବାକୁ ଦେବିନି ।

Dr.— ଆପଣ ସ୍ୱଗତ ହୁଅନ୍ତୁ, Mr. ପାଇକରାୟ ! ଆପଣ ବୁଝିବା ଉଚିତ ଯେ ଆପଣ ଅଜାଣତରେ ସୀମା ବାହାରକୁ ଚାଲିଯାଉଛନ୍ତି । ସେ ଅନ୍ୟର 'ଝିଅ', ଅନ୍ୟର 'ସ୍ତ୍ରୀ', ଅନ୍ୟର 'ବୋହୂ' । ଭୁଲରେ ଗୋଟେ ପୋଷା ଚଢ଼େଇ ଆପଣଙ୍କ ଘରକୁ ଚାଲିଆସିଛି ବୋଲି ଆପଣ ତାକୁ ନିଜର ଦାବୀ କରି ବସିବେ ?

ପାଇକରାୟ—( ଦୃଢ଼ତାର ସହ ) ହଁ, ଦାବି କରିବି । ଆଉ ସେଥିପାଇଁ ଯଦି ମୋତେ ଅଇନର ବାଠଗଡ଼ା ଭିତରେ ଛିଡ଼ାହେବାକୁ ପଡ଼େ ମୁଁ ସେଥିପାଇଁ ପ୍ରସ୍ତୁତ ଅଛି, Dr. Acharya !

ଶିଶିର
ତରୁଣ
ଅବନୀ } —ହଁ, ଦରକାର ପଡ଼ିଲେ ଆମେ ସମସ୍ତେ ସାହେବଙ୍କ ପାଇଁ ଆଇନ ଭାଙ୍ଗି ଜେଲ ଯିବାକୁ ପ୍ରସ୍ତୁତ ।

Dr.—ଆଜିଯାଏ ମାନସିକ ଚିକିତ୍ସାଳୟର ହତା ଭିତରେ ମୁଁ 'ପାଗଳମାନଙ୍କୁ ଦେଖିଛି, ହେଲେ ଅଜି ମନେହଉଛି, ସେଇ ହତା ବାହାରେ କିଛି କମ୍ ତ ନାହାନ୍ତି !

ସମସ୍ତେ—( ଚତ୍କାର କରି ) ଆପଣ କହୁବାକୁ ଚାହାନ୍ତି, ଆମେ ସମସ୍ତେ...

Dr.—ହଁ, ପାଗଳ, ଆପଣମାନେ ସମସ୍ତେ ପାଗଳ । You all are mad, insane.

ସମସ୍ତେ—( ହସିବାକୁ ଆରମ୍ଭ କରିଛନ୍ତି ଖୁବ୍ ଜୋରରେ )

Dr.—( ଚତ୍କାର କରି ) କନ୍ତୁ, ମୁଁ ଏ ପାଗଳାମି ଦେଖିବାକୁ ଚାହେଁନା । No, never. Please stop. Do what i say ! ମୁଁ ଯାହା କହୁଛି ଠିକ୍ ସେମିତ ।

—ଅନ୍ଧାର—

[ ଆଲୋକ ଜଳିବାରୁ ଦେଖାଗଲା, ବାମରୁ ଡାହାଣକୁ ପାଇକରାୟ, ସୁନ୍ଦରମଲ, ରକା, ସାଧୁଆ ଓ ଚନ୍ଦ୍ରସ୍ୱର ସାଙ୍ଗମାନେ ମୂକ ହୋଇ ଭଉନ୍ନ ଜାଗାରେ ଠିଆ ହୋଇଛନ୍ତି । ସମସ୍ତଙ୍କ ଆଖିରେ ଲୁହ । Dr. ଆଚାର୍ଯ୍ୟ ସେଠି ନାହାନ୍ତି । ପ୍ରବେଶ କଲା ଚଟିଆ, ହସ ହସ ମୁହଁରେ । ସେ ପିନ୍ଧିଛି ନାଲି ବନାରସୀ ଶାଢ଼ୀ, ମୁଣ୍ଡରେ ଟୀକା, ଦେହରେ ପ୍ରଚୁର ଗହଣା, ଗୋଡ଼ରେ ପାଉଁଜ । ବାହାରେ ଶୁଭୁଚ ସାହୁଲେକଙ୍କ ଶଙ୍ଖ, ହୁଳହୁଳି, ସାହାନାଇ ଓ ବାଜା । ଚଟିଆ ଚାଲି ଚାଲି ଆସିଛି ପ୍ରଥମେ ସାଧୁଆ ପାଖକୁ ]

ଚଟିଆ—କରେ କାନ୍ଦୁଚ କାହିଁକ ? ଓଃ, ସବୁବେଳେ ତତେ ଖାଇବାପାଇଁ ଗାଳି ଦଉଥିଲି । ଏଣିକ ଆଉ ଗାଳି ଦେବନ । ଯାହା ମନହେବ ଖାଇବୁ; ପେଟ ଊଣା କରିବୁନ । ଖ୍ୱେଷେଇଘର, ଭଣ୍ଡାର ଘରର ସବୁ ଚାବି ତତେ ଦେଇଯାଉଛି ।

[ କାନରୁ ସୁନ କାଢ଼ି ସାଧୁଆ ହାତରେ ଦେଇଦେଲ । ସାଧୁଆ ଆହୁରି ଜୋରରେ କାନ୍ଦିବା ଆରମ୍ଭ କରିଛି । ସେପଟରେ ନିଜକୁ ସମ୍ଭାଳି ନ ପାରି ପାଇକରାୟଙ୍କ ଆଖିରେ ଲୁହ; ମନର କୋହ ଲୁଚାଇ ଚାଲିଯାଇଛନ୍ତି ବାହାରକୁ । ଛଟିମା ହସ ହସ ମୁହଁରେ ପୁଣି ଯାଇ ପହଞ୍ଚିଲ ସୁବିମଳ ପାଖରେ ]

ଛଟିମା—ଆପଣଙ୍କ ନା idiot ବାବୁ ନା ! ନମସ୍କାର । ଦେଖ, ମୋ ନଣନ୍ଦଟିକୁ ଆଜି ହାତଛଡ଼ା କରି ନିଜେ ଲକ୍ଷ୍ମୀଛଡ଼ା ହବ ନାହିଁ । ରାଜବାଟୀରେ ଥାଅ କି ବଣଜଙ୍ଗଲରେ ଥାଅ, ଏ ଯେମିତି ଥିବ ତୁମ ପାଖରେ ।

[ ଛଟିମା ନୀହାରିକା ଆଗରେ ଠିଆ ହେଲା; ତା ଓଠଟିକୁ ଟେକି ଧରିଲା ]

ଛଟିମା—ମୋ ରାଣୀ ଅଛି, ତୋର ଚାକ୍ରୁ ଯେମିତି ଆଜି ହଇରାଣ ନ କରୁ । ରାଗ, ଅଭିମାନ, କଳି ସବୁ ଭଲ ଯେ···ହେଲେ ଯଦି ବନ୍ଧକିଆ ହୋଇଥାଏ । ମାଇପି ଝିଅର ଜୀବନଟା ତ ପରପାଇଁ ଲେ !

[ ରଜା ଅଶ୍ରୁ ଆବେଗରେ ସୁହୃଜକୁ ଧରି କୁଣ୍ଢାଇପକାଇ କାନ୍ଦିବାକୁ ଲାଗିଲା ]

ଛଟିମା—ଛି, ମୋ ସୁନା ନଣନ୍ଦଟା ପରା ! ( ନୀହାରିକା ଆଖିରୁ ଲୁହ ପୋଛି ଦେଇଛି ) ଆଜି ଏ ଆଖିରେ ନୁହେଁ···ହସ, ହସ·· ହସିଲୁ !

[ ରଜାକୁ ଛାଡ଼ିଦେଇ ଛଟିମା ଯାଇଛି ଶିଶିର, ପ୍ରଶାନ୍ତ ଓ ଅବନୀ ପାଖକୁ । ସମସ୍ତଙ୍କ ମୁହଁକୁ ଅନେଇ ]

ଛଟିମା—ଇସ୍, କି ମାଇଚିଆ ତମେମାନେ ସବୁ ! ତମେମାନେ ବି ରଜା ଭଳିଆ କାନ୍ଦୁଛ ! ରଜା, ଦେଖୁଛୁ ଏମାନଙ୍କୁ···

ଛଟିମା—ମୁଁ ଥିଲାବେଳେ ତ ତମମାନଙ୍କୁ ବହୁତ ଖଟେଇଛି । ( ଶିଶିରକୁ ) ତମକୁ ହେମଦନ୍ତା ଧରେଇ, ( ଅବନୀକୁ ) ତମ ହାତରେ ଘର ଝାଡ଼ୁ କରେଇ ।

ସତରେ ତମକୁ ସବୁ ଈଶ୍ୱର ପୂରଣ କରନ୍ତୁ । ହଉ, ମନ ଦୁଃଖ କରିବନି । ଶୀଘ୍ର ତମପାଇଁ ଗୋଟିଏ ଗୋଟିଏ କନିଆ ଖୋଜି ବାହା କରେଇବି । ପୁରାପୁରି modern girl ହେଇଥିବ, ଘର କାମ କିଛି ଆସୁ ନ ଥିବ । ତାହେଲେ ଯାଇଁ ତମେ ସବୁ ଠିକ୍ ଜବ୍ଦ ହେବ । ହଉ, ମୁଁ ଯାଉଛି । ସାଧୁଆକୁ କହୁଚି, ତୁମମାନଙ୍କୁ ସବୁ ସୁବିଧା କରିଦବ । ଯେତେ ଇଚ୍ଛା ସେତେ ପିଇବ । ଆଉ ମୋ କଥା ଟିକେ ଟିକେ ମନେ ପକଉଥିବ । ଆରେ ! କାନ୍ଦୁଚ କଣ ? ଲୁହ ପୋଛ, ଲୁହ ପୋଛ ।

[ ନିଜେ ଯାଇଁ ସମସ୍ତଙ୍କ ଆଖିରୁ ଲୁହ ପୋଛି-ଦେଲା । ତା' ପରେ ଚଟିଆ ଯାଇଁ ତା ଘର ଭିତରେ ଥିବା ଠାକୁରଙ୍କ ପାଖରେ ପ୍ରଣାମ କଲା । ଶଙ୍ଖ, ହୁଳହୁଳି, ସାହାନାଇର ଶବ୍ଦ ତୀବ୍ରରୁ ତୀବ୍ରତର ହେଲା । ଚଟିଆ ଧୀରେ ଧୀରେ ସମସ୍ତଙ୍କ ମଝି ଦେଇ ବାହାରକୁ ଚାଲିଯାଉଛି । ମଞ୍ଚ ଅନ୍ଧକାର ହୋଇଗଲା । ]

[ ତେଲିଙ୍ଗି ବାଜା, ସାହାନାଇ, ବାଣ ଫୁଟିବାର ଶବ୍ଦ କ୍ରମେ ଦୂରରୁ ଦୂରତର ହୋଇ ମିଳାଇଗଲା । କମାଇଁ ଗୋସାଇଁଙ୍କର ଗୀତ ଶୁଭିଲା । ଗୀତର ମର୍ମ—ମଥୁରାର ରାଜା ହୋଇ ତୁମେ ବସିଲ । ଟିକେ ଖବର ନେଲନି ରାଧା କୁଆଡ଼େ ଗଲେ, ସୁଦାମ ସଖା କୁଆଡ଼େ ଗଲା । ଯେଉଁମାନେ ତୁମ ପାଇଁ ଜୀବନ ଦେଲେ ସେମାନଙ୍କ କଥା କିଛି ବୁଝିଲନି, ଆଉ ମୁଁ ତ ଏକ ସାମାନ୍ୟ ଭକ୍ତ । ମୋ କଥା ତମେ କ'ଣ ବୁଝିବ ?

[ ଆଲୋକର ଏକ କ୍ଷୀଣ ରଶ୍ମି ଆସି ପଡ଼ିଲା ଖଟ ଉପରେ । ଦେଖାଗଲା—ତକିଆ ଉପରେ

ମୁହଁ ରଖି ଅର୍ଦ୍ଧ ଭଳି ପଡ଼ିରହିଛି ତନ୍ମୟ । ତନ୍ମୟର ମନ ମଧ୍ୟରେ, ତନ୍ମୟର କାନରେ ଶୁଭେ ଯେପରି ଗୁଞ୍ଜରି ଉଠୁଛି ବନ୍ଧୁମାନଙ୍କ କଥା ]

ଶିଶିର—ତନ୍ମୟ ! ଆରେ, ତୁ କ'ଣ ଶୋଇଛୁ ? University darma competion ୧୩ ତାରିଖ । ଆଜି ରିହର୍ସାଲ୍ ଆରମ୍ଭ । ଆ, ଯିବା ଆ । ଏଥର ତୋର hero role । ଆଉ heroin କିଏ, ଜାଣିଚୁ ? College queen 'ରେଖା' ।

[ ତନ୍ମୟର ମନରେ, ଆଖିରେ କୌଣସି ପ୍ରତିକ୍ରିୟା ଦେଖା ଦେଉନି ]

ଅବନୀ—ଆଜି college annual sports ନା ? ତୁ ଏଠି ବସିଚୁ ? ଚାଲ୍, ଯିବା ଚାଲ୍ । ଆରେ, ଉଠ୍—ଗତ ବର୍ଷ ତ ଆମ class champion, ଏ ବର୍ଷଟା ଛାଡ଼ିଦେବା ?

( ତନ୍ମୟ ନିର୍ଲିପ୍ତ )

ଧୀରଜ—ଆରେ, ତନ୍ମୟ ଯେ ! ଦେଖିଚୁ, ଡଲି ! ତନ୍ମୟର ଚେହେରା କ'ଣ ହୋଇଚି ? ମୁଣ୍ଡବାଳ ଶୁଖିଲା ଫୁରୁ ଫୁରୁ, ମୁହଁରେ ବୋଝେ ଦାଢ଼ି ।

ଡଲି—କ'ଣ ତନ୍ମୟବାବୁ ? Frustration ? ( ହସିଛି ଡଲି ) ତା' ହେଲେ ତଟିନୀ ଦେବୀ ସତରେ ଆପଣଙ୍କ ସବୁଜ ଉପତ୍ୟକାକୁ ରୁକ୍ଷ ମରୁଭୂମିରେ ପରିଣତ କରି ଛନ୍ଦଚପଳ ଗତି ନେଇ ତଟିନୀଭଳି ବହି ଚାଲିଗଲେ ! ଆହା···ଚୁ···ଚୁ··· ।

( ତନ୍ମୟ ନିର୍ଲିପ୍ତ )

ଧୀରଜ—ଏଇସବୁ କଥା କହି ତାକୁ ଆଉ ଜଳାନା, ଡଲି ! ବରଂ ତାକୁ କ୍ଷମା ଦେ । Forget and forgive. ଆଉ ଥରେ ତା ହାତ ଧରି ତାକୁ ସବୁ ଭୁଲେଇ ଦେ । କଣ କହୁଚ ତନ୍ମୟ ?

ଡଲି—କଣ ତନ୍ମୟବାବୁ ! ଆସିବେ ? ଏଇ, ମୁଁ ହାତ ବଢ଼େଇଚି ।

( ତନ୍ମୟର କୌଣସି ପ୍ରତିକ୍ରିୟା ଦେଖା ଦେଲା ନାହିଁ )

ସାଧୁଆ --ବାବୁ ! ସବୁ ଭୁଲ ମୋ'ର । ମୋ ମୁଣ୍ଡରେ କିଛି ନାହିଁ । ମୁଁ ତାଙ୍କୁ ଚିହ୍ନି ପାରିଲି ନାହିଁ । ଡାହାଣି ବୋଲି ମଣିଲି । ସେଇଥିପାଇଁ ତମେ ତାଙ୍କୁ ନାଢ଼ି ଦେଲ, ବାବୁ !

ପାଇକରାୟ—ତନ୍ମୟ, ମୁଁ ତୋ ବାହାଘର ଠିକ୍ କରିଦେଇଛି । କେତେଦିନ ଆଉ ଅପେକ୍ଷା କରିବୁ ? ବଉଳପୁର ସାମନ୍ତର ଘର, ଗୋଟିଏ ବୋଲି ଝିଅ, ଜାତକ ବି ଭଲ ପଡୁଛି । ଝିଅଟି ଦେଖିବାକୁ ଗୋଟିଏ ଗୁହ୍ଲଳରେ ଚଢ଼ା । ତୁ ରାଜି ହୋଇଯା, ବାବା, ତୁ ରାଜି ହୋଇଯା ।

ମାହାନ୍ତେକା—ଖବରପାଉନ ଖାଇ, କୁଆଡ଼ୁ ସିଏ ଆସିଲେ, କେମିତି ସିଏ ଆସିଲେ, କାହିଁକି ସେ ଅସିଲେ ? ତମକୁ ସେ କିଛି ଦେଇନାହାନ୍ତି ମୁଁ ଜାଣେ ; ହେଲେ ମତେ ତ ସବୁ ଦେଇଗଲେ । ମୁଁ ତାଙ୍କୁ ଫେରିପାଇଲି, ମୋ ଶଙ୍ଖାସିନ୍ଦୂର ଫେରିପାଇଲି । ହେଲେ ଯାହା ପାଇଁ ଏ ସବୁ, ସେ ଆଜି କେଉଁଠି ? କହ୍ନପାଶର ସିଏ ଆଜି କେଉଁଠି ? କୁହ, କୁହ, କହ, ସିଏ କେଉଁଠି ?

( ତନ୍ମୟର କୌଣସି ପ୍ରତିକ୍ରିୟା ନାହିଁ )

ତଟିନୀ -ନା, ନା, ମୋର କିଛି ଦରକାର ନାହିଁ । ଔଷଧ, ଇଞ୍ଜେକ୍ସନ, ଇଲେକ୍ଟ୍ରିକ୍ସକ୍, ମୋର କିଛି ଦରକାର ନାହିଁ । ମୁଁ ଭଲ ଅଛି, ଖୁବ୍ ଭଲ ଅଛି । ମୋର କିଛି ହୋଇନି ।

( ତନ୍ମୟ ଚଟ୍ କରି ଉଠିଗଲା । ତା'ର ହୃଦୟର ସବୁ ତାରଗୁଡ଼ାକ ଯେପରି ଏକାଠି ଚିତ୍କାର କରିଉଠୁଛନ୍ତି—ତଟିନୀ, ତଟିନୀ, ତଟିନୀ !!! )

ତନ୍ମୟ—( ଚିତ୍କାର କରିଉଠିଛି ) ତଟିନୀ ! ତୁମେ କେଉଁଠି ?

ତଟିନୀ—ମୁଁ ଏଇଠି । ମତେ ଏମାନେ ଜୋର କରି ବାନ୍ଧି ରଖିଛନ୍ତି । କହୁଛନ୍ତି ମୁଁ ପାଗଳ ? ଆଚ୍ଛା, ତୁମେ କୁହତ ମୁଁ କଣ ପାଗଳ ? ନା, ମୁଁ ଏଠି ରହିବନି, ତମେ ମତେ ଏଠୁ ନେଇଯାଅ, ଶୀଘ୍ର ନେଇଯାଅ ।

ତନ୍ମୟ—ହଁ, ମୁଁ ତୁମକୁ ନେଇଆସିବି ତଟିନୀ । ମୁଁ ତୁମକୁ ଖୋଜୁଛି । ମୁଁ ଆଜି ତୁମକୁ ଅପେକ୍ଷା କରିଛି । ଦିନେ ବନ୍ଧୁ ଥିଲି ତୁମେ ଦୂରେଇଯାଅ ହେଲେ ଆଜି ମୁଁ ତୁମକୁ ଖୋଜୁଛି—ମୁଁ ତୁମକୁ ଖୋଜୁଛି ।

[ ଏଇ ସମୟରେ ଦେଖାଗଲା କାଚ ଝରକା ସେପଟେ ରତିମାର ମୁହଁ । ସେ ଯେପରି ଚିତ୍କାର କରୁଛି ଚିନ୍ମୟ, ଚିନ୍ମୟ । ଚିନ୍ମୟ ତାକୁ ଧରିବାକୁ ଦଉଡ଼ିଗଲା ଦୁଇ ହାତ ବଢ଼ାଇ । ଆଘାତ କରୁଛି କାଚ ଝରକା ଉପରେ । ହାତ କଟିଯାଇ ରକ୍ତ ବାହାରୁଛି । ହାତର ରକ୍ତ ଦେଖି ସେ ଚାରିଆଡ଼କୁ ଚାହିଁଛି । ଦେଖିଛି, କେହି ନାହାନ୍ତି, ସେ ଏକା । ଅଳ୍ପକ୍ଷଣ ପୂର୍ବରୁ ସେ ଯାହାସବୁ ଶୁଣୁଥିଲା ସେସବୁ ଏକ ମାନସି ଦୁଶ୍ଚିନ୍ତା ଛଡ଼ା ଅନ୍ୟ କିଛି ନୁହେଁ ]

ଅନ୍ଧାର